# ମିଠା ମିଠା ସପନ

ଲେଖକ :
ଶ୍ରୀ ନରସିଂହ ମିଶ୍ର

ପ୍ରକାଶକ :
କୋଣାର୍କ ପବ୍ଲିଶର୍ସ
ବଡ଼ୋଦବଡ଼ା଼ଶ୍ଵା କଟକ-୨

ପ୍ରଥମ ପ୍ରକାଶ : ୧୯୮୮

ମୁଦ୍ରଣ :
ଓଡ଼ିଶା ପ୍ରିଣ୍ଟିଂ ଓ୍ୱାର୍କସ୍
ମିଶନରୋଡ଼, କଟକ-୧

ମୂଲ୍ୟ : ଟ ୫·୦୦
(ପାଞ୍ଚଟଙ୍କା ମାତ୍ର)

## ଏଥିରେ ଏଇ ଗପ ଗୁଡ଼ିକ ଅଛି :

| ବିଷୟ | ପୃଷ୍ଠା |
|---|---|




# ମିଠା ମିଠା ସପନ

ବାହାରେ ସୁ ସୁ ପବନ ବହୁଥାଏ । ଥଣ୍ଡାଳିଆ ପାଗ । ଆକାଶରେ ଘନ ଘନ ବିଜୁଳି ମାରୁଥାଏ । ଝୁହାଙ୍କୁ ଝୁହା ବର୍ଷା । ଟୁକୁନା ଖଟ ଉପରେ ଶୋଇଛି । ଆଖିରେ ଆଖିଏ ନିଦ । ରାତି ବି ବହୁତ ହୋଇଗଲାଣି । ସେ ଗୋଟାଏ ସପନ ଦେଖିଲା । ଭାରି ମଜାଳିଆ ସପନ । ଯେମିତି ମିଠା ସିମିତି ସିଠା। ମିଠା ସିଠା ମିଶାମିଶି । ସେ ଦେଖିଲା—

"ସଅଳେ ପିଲା ଭା ଗଛର ପାରେ ବେଢ଼ି ଛନ୍ତି । ଦଳେ ପୁଅ, ଦଳେ ଝିଅ । ସବୁଗୁଡ଼ାକ ତାର ବୟସର, କୁନି କୁନି । ଝିଅମାନଙ୍କ ମୁଣ୍ଡରେ ନାଲି ନେଳି ଜାତି ଜାତିକା ରିବନ । ରଙ୍ଗ ବେରଙ୍ଗ ଫ୍ରକ । ବେଙ୍ଗୁଲି ନାନୀ ପରି ଫୁକୁଲ୍ ଫୁକୁଲ୍ ଡେଉଁ ଥାନ୍ତି । ବାଃ ଭାରି ମଜା । ପୁଅଗୁଡ଼ାକ ବି କମ୍ ନୁହନ୍ତି, ସତେ ଅବା ବାନରସେନା । ସମସ୍ତେ ଏକ ସାଥିରେ କହି ଉଠିଲେ, "ଟୁକୁନା ଆମର ରଜା ।"

ସମସ୍ତେ ବେଢ଼ିଯାଇ ବେଶ କରିଦେଲେ । ଠିକ୍ ରଜା ପରି । ମୁଣ୍ଡରେ ଲମ୍ବା ପଗଡ଼ି । ସେଥିରେ ମୟୂରଚୂଳ । ଅଣ୍ଟାରେ କାଚ୍ଛେଣୀ । ହାତରେ ରାଜଦଣ୍ଡ । ନାକତଳେ କଳା

ଗାରର ଦ'ପଟ ନଖ । ତାକୁ ନେଇ ଗୋଟାଏ ଉଚ ପଥର ଉପରେ ବସାଇଲେ । ସେଇଟା ତାର ସିଂହାସନ । ସବୁ ପିଲା କହିଲେ "ତମେ ଆମର ରଜା, ରାଇଜଯାକର ସୁଖ ଦୁଃଖ ହାରଗୁହାରି ବୁଝ । ଇମିତି ନ୍ୟାୟ ବିଚାର କର, ଯେମିତି ଆମ ଶିଶୁ ରାଇଜରେ ରାମ ରାଇଜ ଆରମ୍ଭ ହେବ ।

ଟୁକୁନା ରଜାପରି ଗମ୍ଭୀର ହୋଇ ତା ପଥର ସିଂହାସନରେ ବସିଲା । ପାଖରେ ପାତ୍ର, ମନ୍ତ୍ରୀ, କଟୁଆଳ । ଆଗରେ ରାଜସଭା । ରଜାଙ୍କ ଗୁଣ ଗାଇ ଗାଇ କିଏ ଗୀତ ଗାଇଲା ତ କିଏ ନାଚିଲା । ଠିକ୍ ଏତିକିବେଳେ ଦେଖାଗଲା, ଗୋଟାଏ ଲମ୍ବା ଜୀବ ତା ସିଂହାସନ ଆଡ଼କୁ ଦଉଡ଼ୁଚି । ଜିଭ କାଢ଼ି ଧକେଇ ହେଉଚି, ମୁହଁଟା ଲମ୍ବୁଳିଆ, ଲାଞ୍ଜଟା ବଙ୍କା । ପହଞ୍ଚି ଲମ୍ଫଣି ଆରମ୍ଭ କରିଦେଲା ।

ଭେ...ଭେ ..ଭେ...ଭେଉଁ ଓ ଓ । ମଣିମାଙ୍କର ଜୟ ହେଉ । ଟୁକୁନାର ଗମ୍ଭୀର ପଣିଆ ଉଭେଇଗଲା । ସେ ହସି ଦେଇ କହିଲା, "କଲେ କ୍ୟୁନ୍, କୁଆଡ଼େ ଆସିଚୁ ? ମୁଁ ପରା ଅଜି ରଙ୍ଗ୍ ବନିଚି ।"

"ମଣିମା ରାଜପଣ ପାଇଛନ୍ତି ଶୁଣି ଦଉଡ଼ି ଆସିଲି । ଆପଣ ପରା ସଭିଙ୍କ ଗୁହାରି ଶୁଣୁଛନ୍ତି, ଦୁଃଖମୋଚନ

କରୁଛନ୍ତି, ମୋ ଦୁଃଖ ଟିକିଏ ଶୁଣନ୍ତୁ । ମୁଁ ହେଉଚି ମଣିମାଙ୍କ ରାଇଜର ଚଉକିଆ । ବିନା ମୂଲ୍ୟରେ ଗାଁ 'ଜଗେ । ମୋ ଉରରେ ଗାଁ ଭିତରକୁ ଚୋର ପଶିପାରେ ନାହିଁ । ମୁଁ ସିନା ବକସିସ୍ ପାଆନ୍ତି ଓଲଟି ଆପଣଙ୍କ ରାଇଜର ପିଲାଏ ମୋତେ ଦେଖିଲେ ମୋ ଉପରକୁ ଟେକାପଥର ପକାନ୍ତି । ମୋର ଥାନ ଅଥାନରେ ବାଜିଗଲେ ମୁଁ କେଁ କେଁ ହୋଇ କାନ୍ଦି କାନ୍ଦି ପଳାଏ । ସେମାନେ ତଥାପି ମୋ ପିଛା ଧରନ୍ତି । ଏଇ ଯୋଉ ପିଲାମାନେ ଭୁନ ମୁନ ହୋଇ ସୁନା ପିଲାପରି ଛିଡ଼ା ହେଇଚନ୍ତି, ଏମାନଙ୍କୁ କମ କହିବନି । ଗୋଟିଏ ଗୋଟିଏ ଖାଣ୍ଟି ବିଛୁଆତି । ପିଲାଏ କୁକୁରର କଥା ଶୁଣି କୁରୁ କୁରୁ ହୋଇ ହସି ପକାଇଲେ । ରଜା ଆଖି ତରାଟି ଚାହିଁବାରୁ ତାଙ୍କ ହସ ବନ୍ଦ ହୋଇଗଲା ।

କୁକୁର କହିଲା, "ହଁ ହସୁଚ ! ନୂହେ । ? ତମେ ଜାଣୁଚ କୁକୁରଗୁଡାକ କିଛି ନୁହନ୍ତି । ତମର ଉପକାର କରିବେ, ତମଠୁ ମାଡ଼ ଖାଇବେ । ଅମେ ସିନା ସହିଯାଉଚୁ ବୋଲି । ସହି ନ ପାରିଲେ କାମୁଡ଼ି ଦେବୁ କି ନାହିଁ ? କାମୁଡ଼ିଲେ ତମେ ସବୁ ଇମିତି ଉତୁପାତ ହେବଟି ! ହଁ, ରଜାଙ୍କର ଦରବାର ବସିଚି, ମୁଁ ତମର ସବୁ ଗୁମର ଖୋଲି ଦେବି । ତେଣିକି ଯାହା ବିଚାର ହେବ । ବୁଝିଲେ ମଣିମା, କ'ଣ କହିବାକୁ ଯାଇ କୁକୁର ଆଉ କହି ପାରିଲାନି । ଖାଲି କାନ୍ଦିଲା ।

ଭୌଉ···ଭୌଉ···ଭୌଉ···ଭୌଉ ।

ରଜା ତାକୁ ଆଉଷି ଦେଇ କହିଲେ, 'କାନ୍ଦନା, କହ କଣ କହୁଚୁ, ମୁ ତୋକଥା ବୁଝିବ ।'' କୁକୁରଟି କୋହ ସମ୍ଭାଳି କହିଲା ମଣିମା, ଏଥର ମୁଁ ଛଅଟି ଛୁଆ ଜନମ କରିଥିଲି । ମଣିମାଙ୍କ ଖଳାର ପାଲଭୁଡ଼ିତଳେ ଲୁଚ୍ଛିଣିଆ ଜାଗାରେ ସେଗୁଡ଼ିକ ଥିଲେ । ମଣିମା ! ତାଙ୍କ ଆଖି ଫିଟି ନଥିଲା । ଏଇ ଦୁଷ୍ଟ ପିଲାଙ୍କ ଭିତରୁ କିଏ ଯାଇ ଗୋଟିକୁ ସେଇ ନଳାରେ ଫୋପାଡ଼ ଦେଲା । ଆଉ ଗୋଟିକୁ କିଏ ନେଇ ତା ଉପରେ ପିଚୁ ଢ଼ାଳିଦେଲା ଯେ ଛୁଆଟା ମରିଗଲା । ଆଉ ଗୋଟିକର ବେକରେ ଦଉଡ଼ିବାନ୍ଧି ତାକୁ ଘୋଷାରି ନେବାରୁ ସେଇଟି ବି ମରିଗଲା । ଦୁଇଟିକୁ ବିଲୁଆ ନେଇଗଲେ, ଆଉ ଗୋଟିଏ ବୋଲି ଥିଲା ଯେ ସେଇଟିକି କିଏ ନେଇଯାଇଚି । ମଣିମା ବିଚାର କରନ୍ତୁ ମୁ କୁକୁର ବୋଲି କଣ ମା' ନୁହେଁ । ଏ ପିଲାଙ୍କୁ ପଚାରନ୍ତୁ । ତାଙ୍କ ମା'ମାନେ ଏମିତି ଦୁଃଖ ସହି ପାରିବେ ।

ରଜା ସିଂହାସନରୁ ଓହ୍ଲାଇ ଆସି ତା ପିଠି ଆଉଁଷି ଦେଇ କହିଲେ, ''କୁନ୍ ନ୍ ତୁ ଆଉ କାନ୍ଦନା । ତୋ ଆଖି

ଲୁହ ପଡ଼ିଲେ, ସେମାନଙ୍କର ଭଲ ହେବନି । ମୁଁ ତାଙ୍କୁ ଏଇ ଦଣ୍ଡ ଦେଉଛି "ପରଜନ୍ମରେ ସେମାନେ କୁକୁର ପଲ ହୋଇ ଏମିତ ଦୁଃଖ ପାଇବେ ।" "ତୁ ମଣିଷ ଜନମ ପାଇବୁ । ରଜା ପିଲାଙ୍କ ଆଡକୁ ଚାହିଁ କହିଲେ, "ସାବଧାନ, ଏହା ରଜାଙ୍କର ଆଦେଶ କେହି କୁକୁର ଛୁଆଙ୍କୁ କଷ୍ଟଦେଲେ ଏଣିକି ଦଣ୍ଡ ଭୋଗିବାକୁ ପଡ଼ିବ । ସେମାନଙ୍କୁ ତମେ କଷ୍ଟ ଦେବ, ତମମାନଙ୍କୁ ଠିକ୍ ସେମିତି ଦଣ୍ଡ ଦିଆଯିବ । ରାଜା ଆଜ୍ଞା ଅନ୍ୟଥା ହେବନାହିଁ ।"

ହୋ···ହୋ···ରାଜାଙ୍କ ଜୟ ହେଉ ।

ତା ପରେ ଦେଖାଗଲା ବଡ଼ ଜୀବଟା ତାଙ୍କ ଆଡ଼କୁ ମୁହାଁଇଛି । ଦେଖିବାକୁ ଧଳା, ଲମ୍ବା ଲାଞ୍ଜ । ମୁଣ୍ଡରେ ଦୁଇଟା ଶିଙ୍ଗ । ଲମ୍ବା କାନ । ଆଖିରୁ ଲୁହଧାର ବହିଯାଉଛି । ଲେଞ୍ଜରା ଲାଗୁଛି । ସେ ଆସି ମୁଣ୍ଡନୁଆଁଇ ପ୍ରଣାମ କଲା । ତା ପରେ କହିଲା ହମ୍ବା···ହମ୍ବା ··ହମ୍ବା··· । ମଣିମାଙ୍କର ଜୟ ହେଉ ।

"ଆଚ୍ଛା, ତମେ କାହିଁକି ଆସିଛ ? ତମର କ'ଣ ହେଲା ?"

"ଆପଣଙ୍କର ସାଥିରେ ଏ ଜୀବନର ଶେଷ ଦେଖା କରିବାକୁ ଚାଲିଆସିଲି ମହାରାଜ ! ରାତି ପାହିଲେ ଏ ରକ୍ତ ମାଂସ ଦେହ ଆଉ ନଥିବ ।"

କାହାଁକୁ କଣ ହେଲା କି ?

ମଣିମା ଦେଖନ୍ତୁ, ମୋ ବେଙ୍ଗିକୁ କୁଆ ଖୁମ୍ପି ଖୁମ୍ପି ଖଣ୍ଡିଆ କରି ସାରିଲାଣି । ଧାର ମାର ରକତ ବହୁଛି । ଆପଣଙ୍କ ରାଇଜର ଲୋକେ ଆଜିଯାଏ ମୋତେ ଖଟେଇ ଖଟେଇ ମଲା ବେଳକୁ କଂସେଇ ହାତରେ ବିକି ଦେବାକୁ ଆଜି କଥା ଭୁଟିଛି । ମଣିମା ! ସାରାଜୀବନ ଖଟି ଖଟି ମୁଁ ସାଉକାରର ବିଲବାଡ଼ି ଚଷକରି, ମାଟି, ପଥର, ବସ୍ତା ବୋହିଲି । ସାଉକାରର ପାଞ୍ଚଣ ମାଡ଼ରେ ମୋ ପିଠିରୁ ଛାଲି ଛାଡ଼ିଗଲା । ବଳ ବହିପଗଲା, କାମ କରିପାରିଲିନି ବୋଲି ସେ ଗୁହାଳରୁ ବାହାର କରି ଦେଲା । ସଞ୍ଜବେଳେ ସବୁ ଗାଈଗୋରୁ ଗୁହାଳରେ ଶୁଅନ୍ତି । ମୁଁ ଖରା ବର୍ଷା ଶୀତରେ ବାହାରେ ପଡ଼ିଥାଏ । ସମସ୍ତେ ନଡ଼ା ପାଲ କୁଣ୍ଡା ତୁରାଣି ଖାଆନ୍ତି, ମୁଁ ଭୋକରେ ଛଟ ପଟ ହୋଇ ଗୁହାଳ କଡ଼ରେ ଶୋଇଥାଏ । ଶୁଣନ୍ତୁ, ଗୋମାତା, ଗୋରୁ ଦେବତା କହି ମଣିଷଗୁଡ଼ାକ ଇମିତି ଆମର ପୂଜା କରୁଛନ୍ତି । ମୁଠେ କୁଣ୍ଡା, ହାଣ୍ଡିଏ ଅଇଁଠା ତୁରାଣି, ବାଲିମାଟି ମିଶା ଦକେରା ପାଲ ଆମର ଭୋଗ । ମଣିଷମାନଙ୍କର ପରା ବୁଦ୍ଧି ବିଚାର ଅଛି ? ଏଇଟା କଣ ମଣିଷ ପଣିଆ । ଆପଣ ଏକଥା ବିଚାର କରନ୍ତୁ ।

ରାଜା ସିଂହାସନରୁ ଓହ୍ଲାଇ ଆସି ବୁଢ଼ା ବଳଦର ଖଣ୍ଡିଆ ଯାଗାରୁ ରକତ ପୋଛିନେଲେ । ଆଖିରୁ ଲୁହଧାରା ପୋଛିଦେଲେ । ମଲମ ଲଗେଇ ଦେଲେ । ତା ପିଠି

ଥାପୁଡ଼େଇ ଦେଇ କହିଲେ, "ବଳଦ ଭାଇ ! ମୁଁ ଆଦେଶ ଦଉଚି ତମକୁ ମୋ ରାଇଜର ଗୋଶାଳାରେ ରଖାଯିବ । କଂସେଇ ନେଇପାରିବେନି । ଏଣିକି ଯିଏ ଗାଈ ବଳଦ ସେବାରେ ଅବହେଳା କରିବ ସେ ଆର ଜନମରେ ଗାଈ ବଳଦ ଜନମ ପାଇବ । ତମେ ମଣିଷ ହେଇଯିବ । ଯାଅ ତମର ଆଜ କିଛି ଅସୁବିଧା ହେବନି ।

ହମ୍ବା···ହମ୍ବା···ହମ୍ବା···ମହାରାଜାଙ୍କର ଜୟ ହେଉ।

ମେ ଏଁ ଏଁ···ମେଏଁ ଏଁ···ମେଏ ଏଁ···।

ମଣିମାଙ୍କର ଜୟ ହେଉ । ମେଏଁ ଏଁ ।

ରାଜା ପଚାରିଲେ, "ତମର କ'ଣ ହେଲା ?"

ମଣିମାଙ୍କ ପାଖରେ ଦୁଃଖ ଜଣାଇବାକୁ ଆସିଛୁ । ମୁଁ ତ ଗୋଟାଏ ନିରିହ ଜୀବ । ଘିଅ ଭୟାଳୁ । ପାଣିକି ଦେଖିଲେ ବି ଡର । ଆଗେ ବଣ ଜଙ୍ଗଲ ଆମର ଘର ଥିଲା । ବାଘଗୁଡ଼ାକ ଆମକୁ ବଣରେ ରଖେଇ ବଯେଇ ଦେଲେନି । ଆମେ ଭାବିଲୁ ମଣିଷ ଦୟାଳୁ । ତାର ବଗିର ଅଛି, ଚାଲ ତାଙ୍କ ପାଖରେ ଆଶ୍ରୟ ନେବା । ତାପରେ ଆମେ ଏବେ ଆସିଲୁ ଯେ ସେ ଦୁଃଖରୁ ଏ ଦୁଃଖ ଭଲଗଲାଣି । ଲୋକ-

ଗୁଡ଼ାକ ଆମକୁ ସାରୁ ବାଇଗଣ କାଟିଲାପରି କାଟି ପକାଉଛନ୍ତି । ମା କୋଳରୁ କଅଁଳା ଛୁଆକୁ ହଟେଇ ଦେଇ ଆମକୁ ନେଇ କାଟି ଦେଉଛନ୍ତି । ଛୁଆଗୁଡ଼ିକର ବାଇଆ କାନ୍ଦଣା ଶୁଣୁଚ କିଏ । କାଲି ମୋ ଭଉଣୀ ତା ଛୁଆଙ୍କୁ କ୍ଷୀର ଖୁଆଉଥିଲା । କଂସେଇ ଆସି ମା'ଟାକୁ ନେଇ କାଟିଦେଲା । ଛୁଆଟି କାଲିଠୁ କାନ୍ଦୁଛି । ଏଇ ଦେଖନ୍ତୁ ମଣିମା । ଏ ଛୁଆ ବଂଚିବ କିମିତି ? ଆଜିକାଲି ରାସ୍ତା ଉପରେ ପାଠଶାଳା ସାମନାରେ, ହାଟ ବଜାରରେ ଯିମିତି ଛେଳି କଟା ଚାଲିଲାଣି ଆଉ କେଇଟା ଦିନରେ ଆମ ବଂଶ ଲୋପ ପାଇଯିବ ମଣିବା । ଯେଉଁ ପିଲାଏ ଏ କଟାକଟି ଦେଖୁଛନ୍ତି, ସେମାନେ ସେଇଆ ଶିଖିବେ ନା ନାହିଁ ? ଶେଷକୁ ନିଜ ନିଜ ଭିତରେ ହଣାକଟା ହୋଇ ଯଦୁବଂଶ ପରି ନାଶଯିବେ । ଏଇଟା କଣ ମଣିଷ ପଣିଆ । ଆମକୁ ନ କାଟିଲେ କଣ ଚଳନ୍ତାନି । ଆମ ଦୁଧ ଦହି ଛେନା ଘିଅରେ କେତେ ସାର ଅଛି । ଆମ ଖତ କ୍ଷେତ ପାଇଁ ବେଶି ସାର ଦିଏ । ମଣିଷ କଣ ଏତିକି ବିଚାର କରିପାରୁନି । ମଣିମା, ଆଦେଶ ଦିଅନ୍ତୁ, ଆମେ ଆମର ବଣକୁ ଚାଲିଯିବୁ । ଏବେ ତ ବଣରେ ବାଘ ନାହାନ୍ତି । କି ବଡ଼ ବଣ ନାହିଁ । ଛୋଟ ବଣରେ ଆମେ ଆନନ୍ଦରେ ରହିବୁ । ଏ ମଣିଷଗୁଡ଼ାକ ବାଘଠୁ ବେଶୀ ଭୟଙ୍କର ।

ମେଁଏଁ...ମେଁଏଁ...ମେଁଏଁ ମଣିମାଙ୍କର ଜୟ
ହେଉ ।

ରାଜା ଛେଳିର ପିଠି ଆଉଁଷି ଦେଇ କହିଲେ, ମୋ ରାଜ୍ୟରେ ଆଜଠାରୁ ଜୀବ ବଧ ହେବ ନାହିଁ । ଯେ ଏହାକୁ ଅମାନ୍ୟ କରିବ ପ୍ରାଣଦଣ୍ଡ ଦିଆଯିବ । ସମସ୍ତେ ଏକ ସ୍ୱରରେ କହିଲେ ମଣିମାଙ୍କର ଜୟ ହେଉ । ଟୁଲୁନାର ନିଦ ଚଟକରି ଭାଙ୍ଗିଗଲା । ତାର ଆଉକୁ ଚାହିଁଲା ପାଖରେ କେହି ନାହାନ୍ତି । ଛବିଗୁଡ଼ିକ ନାଚୁଛି । ତା ମିଠା ମିଠା ସପନ ଭାଙ୍ଗିଯାଇଛି ।



# ସେ ଚରଣ ମାଗିଲେ



ତପସ୍ୟା, ଦିନରାତି ତପସ୍ୟା ଚାଲିଛି । ବିଶ୍ରାମ ନାହିଁ । ନାହିଁ ନଥିବା ତପସ୍ୟା । ଯୁଗ ଯୁଗ ଧରି ଇମିତି ତପସ୍ୟା କେହି କେବେ କରିନି । ସତ୍ୟ, ଦ୍ୱାପର, କଳିଯୁଗରେ ଏ ତପସ୍ୟା ସମ୍ଭବ ନୁହେଁ । ତପସ୍ୟା ବଳରେ ପୃଥିବୀର ପର୍ବତମାନେ ଦୋହଲି ଗଲେ । ସମୁଦ୍ର ଟହଲି ଗଲା । ସତେ ଅବା ପ୍ରଳୟ କାଳର ଅବସ୍ଥା ! ଇନ୍ଦ୍ର ଆସନ ଟଳମଳ ହେଲା । ଚାରିଆଡ଼େ ଡରିଲେଣି ପଡ଼ିଲା, ସୃଷ୍ଟି ରହିବ କିମିତି ! ଜୀବଜଗତ, ଗ୍ରହଜଗତ ସବୁଆଡ଼େ ଏକା ଡରିଲେଣି । କୋଳୁଆ ଭୟ ଖେଳିଗଲା । ବିଶ୍ୱ ବ୍ରହ୍ମାଣ୍ଡର ସମସ୍ତେ ମଣି

ଈଶ୍ୱରଙ୍କୁ ସ୍ତୁତି କଲେ—"ହେ ଜଗତପତି ! ତମ ସର୍ଜନାର ଚନ୍ଦ୍ରବର୍ଣ୍ଣ ଉଦ୍ୟାନ, ଟିକିଏ ଆଡ଼ ଆଖିରେ ଚାହଁ । ତମେ ଆମର ଜନ୍ମଦାତା, ତମେ ଏ ବ୍ରହ୍ମାଣ୍ଡକୁ ପାଳୁଚ । ଟିକିଏ ଦୟାକର ।"

ସମସ୍ତଙ୍କ ବିକଳ କାନ୍ଦଣା ଈଶ୍ୱରଙ୍କ କାନରେ ପଡ଼ିଲା । ସେ ଦେବଗୁରୁ ବୃହସ୍ପତିଙ୍କୁ ଡାକି କହିଲେ—"ବୃହସ୍ପତି, ଯାଅ ତ ଦେଖି କଣ ହେଉଚି । ଚାରିଆଡ଼ୁ ଏତେ ବିକଳ କାନ୍ଦଣା ଶୁଣା ଯାଉଚି କାହିଁକି ? ମୋ ସର୍ଜନା ଥରହର ହେଲଣି କୋଉଥିପାଇଁ ?"

ବୃହସ୍ପତି ଧ୍ୟାନରେ ବସିଲେ । ତାଙ୍କ ଆଗରେ ଜଳ, ସ୍ଥଳ, ଆକାଶ, ପାତାଳ ଦେବପୁର, ଦାନବପୁର, ମାନବପୁର, କିନ୍ନରପୁର, ସବୁ ଜଳ ଜଳ ହୋଇ ଦେଖାଗଲା । ଦେଖିଲେ କୌଣସି ଆଡ଼େ ସିମିତି କିଛି ଅସୁବିଧା ହେଇନି । ସବୁ ଠିକ୍ ଅଛି । ଆଖି ଖୋଲିଲେ । ପୁଣି ସେଇ କାନ୍ଦଣା, ପୁଣି ସେଇ ତ୍ରାହି ତ୍ରାହି ଡାକ, ପୁଣିଥରେ ଆଖି ବୁଜି ଧ୍ୟାନ କଲେ ।

ଓଃ, ଏଇତ ! ତପସ୍ୟାରେ ଏତେ ମୁନି ଋଷି ବସିଚନ୍ତି ସମସ୍ତେ ନିଶ୍ଚଳ । ହିରଣ୍ୟକଶ୍ୟପର ପୁରରେ ଗୋଟିଏ ଆଲୁଅର ସୁଅ ଛୁଟିଚି କାହିଁକି ! ବାଃ କଥାଟା ଏଇଠି ଅଛି ।

ତାର ପୁତ୍ର ପ୍ରହ୍ଲାଦ ଧ୍ୟାନରେ ବସିଛି । ସେ ଧ୍ୟାନରେ ଇନ୍ଦ୍ର ଆସନ ଦୋହଲି ଗଲାଣି । ଯାଅ, ଈଶ୍ୱରଙ୍କୁ ପ୍ରକୃତ ଘଟଣା ଜଣାଅ ।

ବୃହସ୍ପତି ଈଶ୍ୱରଙ୍କୁ ସବୁ କଥା କହିଲେ—ଭକ୍ତ ପ୍ରହ୍ଲାଦର ତପସ୍ୟାରେ ଆଜି ଈଶ୍ୱର ସନ୍ତୁଷ୍ଟ । ସେ ତାଙ୍କ



ସାମନାରେ ଆସି ସ୍ୱୟଂ ଦେଖାଦେଲେ । ଆଶୀର୍ବାଦ କରି କହିଲେ, "ପ୍ରହ୍ଲାଦ ! ତମେ ଯୋଗବଳରେ ଇନ୍ଦ୍ରଦେବଙ୍କୁ

ମଧ୍ୟ ବଳିଗଲ । ଇନ୍ଦ୍ରପଦ ପାଇବା ପାଇଁ ତମେ ଯୋଗ୍ୟ । ଆଜ ତମର ଅଭିଳାଷ କ'ଣ ?"

ପ୍ରହ୍ଲାଦ ଈଶ୍ୱରଙ୍କ ପଦ ତଳେ ଲମ୍ବ ହୋଇ ପଡ଼ିଯାଇ କହିଲେ—"ହେ ଜଗତପତି ! ମୋ ପରି ଦୀନହୀନକୁ ଯେ ଆପଣ ନଜେ ଆସି ଦର୍ଶନ ଦେଲେ ଏହା ସବୁଠୁ ବଳି ବଡ଼ କଥା । ମୁଁ ଟ ଇନ୍ଦ୍ରପଦ ପାଇବାକୁ ଆପଣଙ୍କୁ ଧ୍ୟାନ କରି ନ ଥିଲି, ତଥାପି ଆପଣଙ୍କ ଆଜ୍ଞା ପାଳିବି । ସେଥିପାଇଁ ଆଶୀର୍ବାଦ ଦିଅନ୍ତୁ । ମୋର ଆଉ ଟଗୋଟିଏ ଭିକ୍ଷା । ଯଦି ଆପଣ ସନ୍ତୁଷ୍ଟ, ତା ହେଲେ ମୋତେ ଏପରି ଗୋଟିଏ ମନ ଦିଅନ୍ତୁ ଯାହା ଆପଣ ଚିନ୍ତାକୁ ଏ ସଂସାରରେ ଏକମାତ୍ର ଧନ ବୋଲି ବିଚାର କରିବ ।"

"ତାହା ହିଁ ହେଉ" କହି ଈଶ୍ୱର ଉଭେଇ ଗଲେ । ପ୍ରହ୍ଲାଦ ଇନ୍ଦ୍ର ଆସନ ପାଇଲେ । ସେ ହେଲେ ଦେବପୁରର ରାଜା । ଦେବତା ମାନେ ହରିବୋଲ ଦେଲେ । ଉପରୁ ପୁଷ୍ପବୃଷ୍ଟି ହେଲା । ବିଶ୍ୱ ବ୍ରହ୍ମାଣ୍ଡ ଶାନ୍ତ ପଡ଼ିଲା ।

ନୂଆ ଶାସନ, ନୂଆ ଆସନ, ସବୁ ନୂଆ । ପ୍ରହ୍ଲାଦଙ୍କ ଦେଖାକରିବାକୁ ଦେବତାମାନେ ଜଣ ଜଣ ହୋଇ ଆସିଲେ । ଭକ୍ତ ପ୍ରହ୍ଲାଦ ସବୁବେଳେ ଭକ୍ତ ଭାବରେ ବିଭୋର । ତାଙ୍କର ବ୍ୟବହାରରେ ସମସ୍ତେ ଖୁସି । ଦାନ, ଧର୍ମ, ହୋମ, ଯଜ୍ଞ ସବୁବେଳେ ଲାଗିରହିଲା ।

ସପ୍ତାହରେ ଗୋଟଏ ଦିନ ପ୍ରହ୍ଲାଦ ମର୍ତ୍ତ୍ୟଲୋକକୁ ଓହ୍ଲାଇ ଆସନ୍ତି । ସେଦିନ ମଣିଷମାନଙ୍କର ସୁଃଖ ଦୁଃଖ ଭଲ ମନ୍ଦ ନିଜେ ବୁଝି, ଯିଏ ଯାହା ମାଗେ ତାକୁ ତାହା ଦାନ କରନ୍ତି । ସେ ଦିନଟି ହେଉଛି ଶୁକ୍ରବାର । 'ଇଚ୍ଛାବର' ଦିବସ । ସେଦିନ ଯେ ଯାହା ଇଚ୍ଛା କରନ୍ତି ପ୍ରହ୍ଲାଦ ତାକୁ ସେଇ ବର ଦିଅନ୍ତି । ସବୁ ପୁର ପାଇଁ ଏଇମିତି ଗୋଟିଏ ଗୋଟିଏ ଦିନ ଠିକ୍ କରାଯାଇଥାଏ । ସେଦିନ ଯେ ଯାହା ମାଗିବ ସେ ତାହା ପାଉଥାଏ । ସମସ୍ତଙ୍କ ମନ କାମନା ଏମିତି ପୂରିଲା । ମର୍ତ୍ତ୍ୟପୁର ବି ସରଗ ପାଲଟିଗଲା ।

ତେଣେ 'ଇନ୍ଦ୍ରଦେବ' ସିଂହାସନ ହରାଇ ମର୍ତ୍ତ୍ୟପୁରକୁ ପଳାଇଯାଇଥାନ୍ତି । ସେ ହିମାଳୟ ପର୍ବତରେ ବସି ଇନ୍ଦ୍ରପଦ ଫେରିପାଇବାକୁ ତପସ୍ୟା କଲେ ।

ଦିନକର ଘଟଣା । ବୃହସ୍ପତି ସ୍ୱର୍ଗରୁ ମର୍ତ୍ତ୍ୟ ଭ୍ରମଣ କରିବାକୁ ଆସିଲା ବାଟରେ ଇନ୍ଦ୍ର ଦେବଙ୍କ ସାଥିରେ ତାଙ୍କର ଦେଖା ହୋଇଗଲା । ଇନ୍ଦ୍ର ବୃହସ୍ପତିଙ୍କୁ କହିଲେ, "ହେ ଦେବଗୁରୁ ! ମୋତେ କିଛି ବୁଦ୍ଧି ବତାଇ ଦିଅନ୍ତୁ, ମୁଁ ଇନ୍ଦ୍ରପଦ ଫେରିପାଏଁ ।"

ବୃହସ୍ପତି କହିଲେ, "ଏଇଟା ଗୋଟଏ କଥା ? ମୁଁ ଇମିତି ବୁଦ୍ଧି ବତେଇ ଦେବି ଯେ ଏକା ଦିନକରେ ଆପଣ ଇନ୍ଦ୍ରପଦ ଫେରି ପାଇବେ ।"

ଏହାପରେ ବୃହସ୍ପତି କହିଲେ—ଶୁଣନ୍ତୁ । ଆପଣ ଗୋଟିଏ ଦରିଦ୍ର ବ୍ରାହ୍ମଣ ବେଶରେ ଶୁକ୍ରବାର ଦିନ ପ୍ରହ୍ଲାଦଙ୍କ ଦରବାରରେ ପହଞ୍ଚନ୍ତୁ । ସେ ଦିନ ଇଚ୍ଛାବର ଦିବସ । ଆପଣ ଯାହା ଚାହିଁବେ ତାହା ପାଇବେ ।"

"ନା…ନା ! ଦେବଗୁରୁ, ମୁଁ ଇନ୍ଦ୍ରପଦ ଭିକ୍ଷା କରିବି ତାହା ମୋପାଇଁ ଘୋର ଅପମାନ ହେବ । ଆଉ କିଛି ବୁଦ୍ଧି ବତାନ୍ତୁ ।

ବୃହସ୍ପତି ହସି ହସି କହିଲେ—ତୁମେ ଇନ୍ଦ୍ରପଦ କାହିଁକି ମାଗିବ ? ତୁମେ ତାଙ୍କୁ ତାଙ୍କ ଚରିତ୍ରଟି ମାଗିବ । ଦେଖନା ତାପରେ କଣ ହେଉଛି । ଏଥିକରେ ସବୁ ଠିକ୍ ହୋଇଯିବ ।"

ଇଚ୍ଛାବର ଦିନ ଇନ୍ଦ୍ର ଗୋଟିଏ ଦରିଦ୍ର ବ୍ରାହ୍ମଣ ବେଶରେ ପ୍ରହ୍ଲାଦ ଦରବାରରେ ଆସି ପହଞ୍ଚିଲେ । ପ୍ରହ୍ଲାଦ ତାଙ୍କୁ ଦେଖି ଖୁବ୍ ମିଠା ଗଳାରେ କହିଲେ, "ବ୍ରାହ୍ମଣ, ମୁଁ ଆପଣଙ୍କର ସେବକ । ଯାହା ଇଚ୍ଛା ତାହା ମାଗନ୍ତୁ, ରାଜ୍ୟ ରାଜପଣ, ଧନ ସମ୍ପତ୍ତି ତାହା ଦେବି ।

"ମୁଁ ସେସବୁ କଣ କରିବି ମହାଶୟ ? ଭିକାରୀ ବ୍ରାହ୍ମଣର ରାଜ୍ୟ, ରାଜପଣ, ଧନସମ୍ପତ୍ତି କଣ ଦରକାର ? ସେ କଣ ତାକୁ ନେଇ ଚଳେଇ ପାରିବ ?

"ତେବେ ଆଉ କଣ ଦରକାର ? ପ୍ରହ୍ଲାଦ ଆଜି ଦାନରେ କାହାରିକୁ କିଛି ଦେବାକୁ ନାହିଁ କରିବେ ନାହିଁ।"

"ଆପଣ ଦୟା କରି ଏ ବ୍ରାହ୍ମଣଙ୍କୁ ଆପଣଙ୍କ ଚରିତ୍ରଟି ଦାନ କରନ୍ତୁ । ମୋର ସେତିକି ଦରକାର ।"

"ବ୍ରାହ୍ମଣ ! ଆପଣ ଆଉ କିଛି ମାଗନ୍ତୁ । ମୋର ଚରିତ୍ରଟା ନେଇ କଣ କରିବେ ?"

ବାହ୍ମଣ ମୁହଁ ଶୁଖେଇ ଦେଇ କହିଲେ, "ମୋର ଆଉ କିଛି ଦରକାର ନାହିଁ । ତେବେ ନିରାଶ ହୋଇ ଫେରୁଛି ।"

ପ୍ରହ୍ଲାଦ ହସି ହସି କହିଲେ "ହେଉ ମୁଁ ମୋ ଚରିତ୍ରକୁ ଏବେ ଆପଣଙ୍କୁ ଦାନ କଲି । ଯଦି ମୋଠୁ ଅଲଗା କରି ଦେଇ ପାରିବେ ତା ହେଲେ ନିଅନ୍ତୁ ।"

କି ଆଶ୍ଚର୍ଯ୍ୟ କଥା ! ଏ କଣ ! ହଠାତ୍ ପ୍ରହ୍ଲାଦଙ୍କ ଦେହ ଭିତରୁ ଗୋଟାଏ ଉଜ୍ଜ୍ୱଳ ଆଲୋକ ବାହାରି ବ୍ରାହ୍ମଣଙ୍କ ଆଡକୁ ଆଗେଇଲା । ପ୍ରହ୍ଲାଦ ପଚାରିଲେ— ଏଁ ତମେ କିଏ ? କୁଆଡେ଼ ଯାଉଚ ?

ଆଲୋକଟି କହିଲା, 'ମୁଁ ହେଉଚି ଆପଣଙ୍କ ଚରିତ୍ର ଏତେ ଦିନ ଆପଣଙ୍କ ପାଖରେ ଥିଲି, ଆପଣ ମୋତେ ଦାନ କରି ଦେଲେ, ମୁଁ ତାଙ୍କ ପାଖକୁ ଚାଲି ଯାଉଚି ।" ଏହା କହି ତାହା ବ୍ରାହ୍ମଣଙ୍କ ଶରୀରରେ ପଶିଗଲା ।

କିଛି ସମୟ ପରେ ଆଉ ଗୋଟିଏ ଆଲୋକ ପ୍ରହ୍ଲାଦଙ୍କ ଦେହ ଭିତରୁ ବାହାରି ଆସିଲା । ପ୍ରହ୍ଲାଦ ପଚାରିଲେ, "ତୁମେ ପୁଣି କିଏ, କେଉଁ ଆଡ଼େ ଯାଉଚ ?"



"ମୁଁ ଆପଣଙ୍କ ରାଜଲକ୍ଷ୍ମୀ, ଏ ପର୍ଯ୍ୟନ୍ତ ଆପଣଙ୍କ ପାଖରେ ଥିଲି । ଆପଣ ଚରିତ୍ର ହରାଇ ଥିବାରୁ ମୁଁ ଚାଲି ଯାଉଚି । ଯେ ଚରିତ୍ର ହରାଏ ତା ପାଖରେ ଲକ୍ଷ୍ମୀ ରହନ୍ତି ନାହିଁ ।"

ପ୍ରହ୍ଲାଦଙ୍କ ମୁହଁ ଦୁଃଖରେ ମଉଳି ଗଲା । ସେ ଦେଖିଲେ କିଛି ସମୟ ପରେ ପୁଣି ଏକ ଆଲୋକ ତାଙ୍କ ଭିତରୁ ବାହାରି ଆସୁଛି । ପ୍ରହ୍ଲାଦ ଏଥର ଆଉରି ବ୍ୟସ୍ତ

ହୋଇ ପଚ଼ାରିଲେ, "ତୁମେ ବା କିଏ, କେଉଁ ଆଡ଼େ ଯାଉଚ ?"

"ମୁଁ ହେଉଚି ଆପଣଙ୍କର ଇନ୍ଦ୍ରପଦ। ତପସ୍ୟା ବଳରେ ଆପଣ ଏ ପଦ ପାଇଥିଲେ। ମୁଁ ଆପଣଙ୍କର ପାଖରେ ଏ ପର୍ଯ୍ୟନ୍ତ ଥିଲି। ଆପଣ ଚରିତ୍ର ଦାନ କରିଥିବାରୁ ରାଜଲକ୍ଷ୍ମୀ ଚ଼ାଲିଗଲେ, ଶିରୀ ଚ଼ାଲିଗଲି। ରାଜଲକ୍ଷ୍ମୀ ଚ଼ାଲିଗଲେ ରାଜପଦ ରହିପାରେନା। ଯେ ମହାନ ତପୀ ସେ କେବଳ ଇନ୍ଦ୍ରପଦ ପାଇଁ ଯୋଗ୍ୟ। ଆପଣ ଚରିତ୍ର ହରା, ମୁଁ ଆପଣଙ୍କ ପାଖରେ 'ରହିବି କିପରି ?"

ଅଖି ପିଛୁଳାକେ ସେହି ଅଲୌକ ବ୍ରାହ୍ମଣଙ୍କ ଶରୀର ଭିତରେ ପଶିଗଲି। ବ୍ରାହ୍ମଣଙ୍କ ରୂପ ବଦଳି ଗଲା। ସେ ସଙ୍ଗେ ସଙ୍ଗେ ଆଗର ଇନ୍ଦ୍ରଙ୍କ ପରି ଦେଖାଗଲେ। ପ୍ରହ୍ଲାଦ ସିଂହାସନରୁ ଓହ୍ଲାଇ ତାଙ୍କୁ ପାଛୋଟି ନେଇ ସିଂହାସନରେ ପାଦତଳେ ପ୍ରଣାମ କରି କହିଲେ "ଇନ୍ଦ୍ରପଦ ପାଇଁ ଆପଣ ହିଁ ପ୍ରକୃତରେ ଯୋଗ୍ୟ। ସତ୍ୟର ଜୟ ହେଉ...ଚରିତ୍ରର ଜୟ ହେଉ।"



# ସେ ପିଲାଟି ନାଁ



ଚାଲି ଚାଲି ପାଦ ଥକି ଗଲାଣି । ନାକରୁ ଗରମ ପବନ ବହୁଛି । ଖରା ତାତରେ ଲଣ୍ଡା ମୁଣ୍ଡ ତାତି ଗଲାଣି । ବ୍ରାହ୍ମଣ ଥକା ହୋଇ ଗଛ ଛାଇରେ ବସି ପଡ଼ିଲେ । ଗଛର ଶହ ଶହ ପତ୍ର ପବନରେ ପଙ୍ଖାପରି ଦୋହଲୁଥାଏ । ଚହୁଁ ଚହୁଁ ପବନରେ ଦେହରୁ ଝାଳବୁନ୍ଦା ଗୁଡ଼ିକ ଉଭେଇଗଲା । ଆହାଃ, କି ଶାନ୍ତି ! ପବନରେ କେତେବେଳେ ବ୍ରାହ୍ମଣଙ୍କ ଆଖିପତା ମୁଦ ହୋଇଗଲା—

ଛାଇ ଛାଇଆ ନିଦରେ ବ୍ରାହ୍ମଣ ସ୍ୱପ୍ନ ଦେଖିଲେ । ଭାରି ମିଠାଳିଆ ସ୍ୱପ୍ନ—ମା ତାଙ୍କର ଆକାଶ ରାଇଜରୁ ଓହ୍ଲାଇ ଆସି ପାଖରେ ବସିଛନ୍ତି । ଲୁଗାକାନିରେ ପୁଅର ଦେହରୁ ଝାଳ ପୋଛୁ ପୋଛୁ କହୁଛନ୍ତି—"ଧନ ରେ ମୋର ! ତୋ ମନସ୍କାମନା ପୂର୍ଣ୍ଣ ହେବ । ମୁଁ ତୋ ଉପରେ ସନ୍ତୁଷ୍ଟ । ଦିନେ ତୁ କହୁଥିଲୁ—ମା'ର ସେବା କଲେ କ'ଣ ମାତୃଭୂମିର ସେବା କରାଯାଇ ନପାରେ ? ମୁଁ ତ ଆଜି ତୋ ପାଖରୁ ଏ ଦୂର ସରଗ ରାଇଜକୁ ଚାଲି ଆସଛି, ତୁ ମାତୃଭୂମିକୁ ମା ବୋଲି ଭାବି ତାର ସେବା କର, ମାତୃଭୂମି ବିଦେଶୀ ଶାସନର ଅତ୍ୟାଚାରରୁ ରକ୍ଷା ପାଉ । ମାତୃଭୂମିର ସେବା ହେଉ ମା'ର ସେବା । ପୁଣି ଦେଖିଲେ ସେ, ମା ଆଙ୍କର ଛାୟାରୂପ ଆଉ ନାହିଁ ।

କିଛି ସମୟ ପରେ ବ୍ରାହ୍ମଣ ଶୁଣିଲେ ପିଲାମାନଙ୍କର ପାଟିତୁଣ୍ଡ । ଆଖି ଖୋଲି ହୋଇଗଲା କିନ୍ତୁ ନିଦର ନିଶା ଲଭି ନି । ଦେଖିଲେ କିଛି ଦୂରରେ ପଲେ ଗାଈ ଚରୁଛନ୍ତି । କେତୋଟି ଗାଈ ଗଛ ଛାଇରେ ଶୋଇ ପାକୋଳି କରୁଛନ୍ତି । କଅଁଳା ଗାଈଟି ତା'ର ଉଠିଆଣୀ ଛୁଆକୁ କ୍ଷୀର ଖୁଆଉଛି । ତା ପିଠିକୁ ଚାଟି ଚାଟି ତୋଫା କରି ଦେଲାଣି । ବାଛୁରୀଟି ହରଣ ଛୁଆ ପରି ଦିଶୁଛି ।

ଗୋଟିଏ ପିଲା ଭେଁ କରି କାନ୍ଦି ଉଠିଲା । ହାତ ପାଦ ବନ୍ଧାଯାଇଛି । ଆଉ କେତେ ଜଣ ପିଲା ତାକୁ ଟାଣି ଟାଣି ଆଣୁଛନ୍ତି । ପଥର ଉପରେ ବସିଛି ଆଉ ଗୋଟିଏ ପିଲା । ସେ ହେଉଛି ରଜା । ତା' ମୁଣ୍ଡରେ ପତ୍ର, ଫୁଲ, ମୟୂରଚୂଳ ବନ୍ଧାଯାଇଛି । ଅଣ୍ଟାରେ ବନ୍ଧା ହୋଇଛି ଛୁଟ କନା । ଅଙ୍ଗାର କାଳିରେ ନାକତଳେ ପଟାଏ ମୋଟା ନିଶ । କାନରେ ବାଘନଖୀର କୁଣ୍ଡଳ । ହାତରେ ବାଉଁଶର ଦଣ୍ଡ । ଆଖିରେ ରଜାର ଗୃହାଣୀ । ମୁହଁରେ ଖୁବ୍ ଗାମ୍ଭୀର୍ଯ୍ୟ । ଗୋରୀ ତକତକ ପ୍ରଶସ୍ତ କଅଁଳ ଦେହକୁ ଭାରି ମାନୁଛି । ସତେ ଅବା ରାଜପୁତ୍ର । ପାଖରେ ମନ୍ତ୍ରୀ, ଦେହରକ୍ଷୀ, ସୈନିକ, କଣ୍ଟୁଆଳ ବେଶରେ ଆଉ ଆଉ ପିଲାମାନେ ଛିଡା ହୋଇଛନ୍ତି ।

ବ୍ରାହ୍ମଣଙ୍କ ନିଦ ଛାଡ଼ିଗଲା । ସେ ଦୂର ଗଛତଳେ ସେମିତି ଶୋଇ ରହି ଗାଈଆଳ ପିଲାମାନଙ୍କର ସେଇ ମିଛି ମିଛିକା ଖେଳ ମନ ଭରି ଉପଭୋଗ କଲେ ।

ବନ୍ଦୀର ବିଚାର ଶୁଣିଲା । ଚୋରି ଅପରାଧରେ ରାଜା ବନ୍ଦୀର ହାତ ପାଦ କାଟିଦେବାକୁ ହୁକୁମ ଦେଲେ । କଣ୍ଟୁଆଳ ଖଣ୍ଡା ପରି ଦିଶୁଥିବା ସୁନାରୀ ଗଛର ଫଳକୁ ହାତରେ ଧରିଥାଏ । ସେଥିରେ ଚୋରର ହାତ ପାଦ କଟାହେଲା ।

ସବୁ ମିଛିମିଛିକା ଖେଳ ।

ରାଜାଙ୍କର ଆଦେଶ—"ହାତ ପାଦ ଯୋଡ଼ଦଅ ।" ସଙ୍ଗେ ସଙ୍ଗେ ହାତ ପାଦ ଯୋଡ଼ା ହୋଇଗଲା ।

ଖେଳ ସରିଲା । ସମସ୍ତେ ଏକସ୍ୱରରେ ଚିତ୍କାର କଲେ, "ଜୟ ମହାରାଜାଙ୍କର ଜୟ ।" ଗାଈଗୁଡ଼ିକ କାନ ଟେକି ସେଇ ଆଡ଼କୁ ଚାହିଁଲେ । ଠିକ ବାଛୁରୀଟି ଲାଞ୍ଜଟେକି କୁଦା ମାରିଲା ।

ବ୍ରାହ୍ମଣ ରାଜା ହୋଇଥିବା ପିଲା ପାଖକୁ ଯାଇ ମଠା ଗଳାରେ କହିଲେ—"ବାପା, ତମଖେଳ ମୋତେ ଭାରି ଭଲ ଲାଗିଲା । ତମେ ସିନା ମିଛିମିଛିକା ରାଜା ହୋଇଥିଲ, ମୁଁ ତମକୁ ସତକୁସତ ରଜା କରିଦେବି । ତମ ବାପାମାଙ୍କ ପାଖକୁ ମୋତେ ନେଇଯାଇ ପାରିବ ?

"ଆସନ୍ତୁ ବ୍ରାହ୍ମଣ ଦେବତା ! ମୋର ବାପା ନାହାନ୍ତି, ମା ଆପଣଙ୍କୁ ଦେଖିଲେ ଭାରି ଖୁସି ହେବେ । ଆପଣ ଯାହା ଚାହିଁବେ ତାହା ମା'ଙ୍କୁ କହିବେ । ଆସନ୍ତୁ ।"

ବ୍ରାହ୍ମଣଙ୍କ ମନରେ ଭାରି କୌତୁହଳ ହେଲା । ପିଲାଟି କିଏ ? କି ସୁନ୍ଦର ଚେହେରା, କି ମଧୁର କଥାବାର୍ତ୍ତା । ସେମାନେ ଯାଇ ପହଞ୍ଚିଲେ ଗୋଟିଏ ପତ୍ରକୁଡ଼ିଆ ପାଖରେ ପିଲାଟି ଦଉଡ଼ିଯାଇ ବ୍ରାହ୍ମଣ ଅତିଥିଙ୍କର ଆସିବା କଥା ମା'ଙ୍କ

କହିଲା । ତା'ର ମା' ପାଖକୁ ଆସି ପ୍ରଣାମ କଲେ । ଆସନ ପାଣିଦେଇ ବସିବାକୁ କହିଲେ । ବ୍ରାହ୍ମଣ ଆସନରେ ବସି ପିଲାଟିକୁ ପାଖରେ ବସାଇଲେ । ସେ ନିଜର ପରିଚୟ ଦେଲେ—

ମୁଁ ହେଉଛି ବିଷ୍ଣୁ ଗୁପ୍ତ ଚାଣକ୍ୟ । ମୋ ଘର ତକ୍ଷଶିଳାରେ । ମୁଁ ଚଣକଙ୍କ ପୁତ୍ର । ସାରା ଦେଶରେ ଆଜି ଯବନ ରାଜାର ଅତ୍ୟାଚାର । ଗାଁ ଗାଁ ଜଳିପୋଡ଼ି ପାଉଁଶ ହେଲାଣି । ଲୋକେ ବଣ ଜଙ୍ଗଲକୁ ପଳାଇଲେଣି । ସିକନ୍ଦରର ଓ ସେଲ୍ୟୁକସର ଅତ୍ୟାଚାରରେ ଲୋକେ ପାଗଳ ହୋଇଗଲେଣି । ରାଜ୍ୟ ରାଜ୍ୟ ଭିତରେ ଏକତା ନାହିଁ । ଘର ଛାଡ଼ି ମୁଁ ଆଜି ରାଜ୍ୟ ରାଜ୍ୟ ବୁଲୁଛି । ସବୁ ରାଜ୍ୟକୁ ଏକତ୍ର କରି ବିଦେଶୀମାନଙ୍କୁ ଆମ ଜନ୍ମଭୂମିର ପବିତ୍ର ମାଟିରୁ ହଟାଇ ଦେବାକୁ ମୁଁ ଚାହେଁ । ଏଥିପାଇଁ ଦେଶର ସବୁ ଲୋକଙ୍କର ଦାନ ଲୋଡ଼ୁଛି । ଯେ ଯେଉଁଠାରେ ଅଛି ସେ ତା ଶକ୍ତି ମୁତାବକ କିଛି କିଛି ଦେଶପାଇଁ ତ୍ୟାଗ କଲେ ଆମ ଦୁର୍ଦ୍ଦଶା ରହିବନି । ମୋ ଥାଳରେ ତୁମେ କିଛି ଭିକ୍ଷା ଦେବନି ମା' ? ମୁଁ ତୁମ ସନ୍ତାନକୁ ସମ୍ରାଟ କରିଦେବି ?"

"ହେ ବ୍ରାହ୍ମଣ ଅତିଥି ! ଏ ଦୁଃଖିନୀ କି ଭିକ୍ଷା ଦେଇପାରିବ ? ଏ ବାଳକଟି ମୌର୍ଯ୍ୟ ରାଜାଙ୍କ ପୁତ୍ର

'ଚନ୍ଦ୍ରଗୁପ୍ତ'। ମଗଧରରାଜା ଧନାନନ୍ଦ ଏହାଙ୍କର ପିତାଙ୍କୁ ହତ୍ୟା କରି ରାଜ୍ୟ ଜୟ କଲେ। ମୁଁ ହତଭାଗିନୀ ଏ ଶିଶୁ ପୁତ୍ରକୁ ନେଇ ଗୋପନରେ ଦୁଃଖର ଦିନ କଟାଉଛି। ମୁଁ ଆପଣଙ୍କ ହାତରେ ମୋ ରଙ୍କନିଧିକୁ ଟେକି ଦେଉଛି। ଆପଣଙ୍କ ନାଁ ଶୁଣିଛି। ଯୁଦ୍ଧବିଦ୍ୟା, ରାଜ୍ୟଶାସନ, ନୀତିଧର୍ମ ସବୁ ବିଷୟରେ ଆପଣ ଆଚାର୍ଯ୍ୟ। ଦୟାକରି ପ୍ରଥମେ ମୋ ସ୍ୱାମୀହନ୍ତାର ପ୍ରତିଶୋଧ ନେବାକୁ ମୋତେ ସୁଯୋଗ ଦିଅନ୍ତୁ।

ଚାଣକ୍ୟଙ୍କ ଆଖିରୁ ଥପ୍ ଥପ୍ ଲୁହ ଗଡ଼ି ପଡ଼ିଲା। ସେ ହାତ ମୁଠାକରି ଗମ୍ଭୀର କଣ୍ଠରେ କହିଲେ,—"ତୁମର ଇଚ୍ଛା ପୂରଣ ହେବ ମା। ମୁଁ ଦେଶପାଇଁ ଭିକ୍ଷାଥାଳ ନେଇ ଧନାନନ୍ଦଙ୍କ ପାଖକୁ ଯାଇଥିଲି। ସେ ମୋତେ ମଧ୍ୟ ଅପମାନିତ କରିଛନ୍ତି। ମୁଁ ପ୍ରତିଜ୍ଞା କରୁଛି, ନନ୍ଦବଂଶ ଧ୍ୱଂସ କରିବି। ଏଇ ଶିଶୁ ସନ୍ତାନ ପିତୃ ହନ୍ତାର ଜବାବ ଦେବ।"

ଚାଣକ୍ୟ ମୌର୍ଯ୍ୟ ରାଜ କୁମାର ଚନ୍ଦ୍ରଗୁପ୍ତଙ୍କୁ ସାଥିରେ ନେଇ ବିନ୍ଧ୍ୟ ପର୍ବତର ଘୋର ଅରଣ୍ୟ ଭିତରକୁ ଗଲେ। ସେଠାରେ ଆଶ୍ରମଟିଏ କରି ତାଙ୍କୁ ସବୁ ବିଦ୍ୟାରେ ତାଲିମ୍ କଲେ। ଅଳ୍ପଦିନ ଭିତରେ ଗୋଟିଏ ଶକ୍ତିଶାଳୀ

ସେନାବାହିନୀ ଗଢ଼ିଲେ ଓ ମଗଧର ନନ୍ଦବଂଶକୁ ଧ୍ୱଂସ କଲେ । ସେ ଚନ୍ଦ୍ରଗୁପ୍ତଙ୍କ ଦ୍ୱାରା ସାରା ଭାରତରୁ ଯବନ ରାଜୁତ୍ୱ ଦୂର କରାଇଲେ । ଯେଉଁ ଭାରତ ଖଣ୍ଡ ଖଣ୍ଡ ହୋଇ ଯାଇଥିଲା ତାହା ପୁଣି ଅଖଣ୍ଡ ଭାରତରେ ପରିଣତ ହେଲା ।

ଚାଣକ୍ୟ ଅର୍ଥଶାସ୍ତ୍ର ଗ୍ରନ୍ଥ ଲେଖିଯାଇ ଅଛନ୍ତି । ରାଜା କିପରି ପ୍ରଜାମାନଙ୍କୁ ଶାସନ କରିବେ ଓ ରାଜଧର୍ମ କିପରି ହେବା ଉଚିତ ସେଥିରେ ବର୍ଣ୍ଣନା କରାଯାଇଛି ।



# ମାଙ୍କଡ଼ର ଅଭିମାନ

ଆଜିକାଲର ନୁହେଁ, ବହୁତ ଦିନ ତଳର କଥା । ଥିଲା ଗୋଟିଏ ପାଜି ମାଙ୍କଡ଼ । ସମସ୍ତେ ତାକୁ ଖୁବ୍ ଭଲ ପାଆନ୍ତି । ମାଙ୍କଡ଼ଟାଏ ହେଲେ କ'ଣ ହେଲା ବୁଦ୍ଧିରେ ମଣିଷଠୁ ବଳେ । ମଣିଷଙ୍କ ଗହଣରେ ରହିବାକୁ ତାକୁ ବେଶି ଭଲ ଲାଗେ । ଛେଳି, କୁକୁର, ବିଲେଇ, ଗାଈ ବାଛୁରୀଙ୍କ ସାଥିରେ ଖେଳିବାକୁ ତା'ର ମନ । ସେଥିଏ ଖେଳିଲା ବେଳେ କାହା କାନ୍ଧ ଉପରକୁ ଚଢ଼ିଯିବା, କାହା ମୁଣ୍ଡରେ ଯାଇ ବସିବା, କାହାକୁ ଖତେଇ ହେବା, ଏଇମିତି କାମରେ ସେ ଲାଗିଥାଏ । କେହି ତା ଉପରେ ବିରକ୍ତ ହୁଅନ୍ତି ନାହିଁ । ସଉକରେ ତାକୁ ସମସ୍ତେ ଡ଼ାକନ୍ତି—"ମିଷ୍ଟର ପାଜି ! ମିଷ୍ଟର ପାଜି !"

ଅତି ପିଲାଦିନର କଥା—ସେତେବେଳକୁ ସେ ତା' ମାଆ ପରି ଏ ଗଛରୁ ସେ ଗଛ ବା ଏ କୋଠାରୁ ସେ କୋଠାକୁ ଡେଇଁ ପାରୁ ନଥିଲା । ମା' ପେଟତଳେ ଛପି ରହୁଥିଲା ତାକୁ ଜାବୁଡ଼ି ଧରି । ଶୂନ୍ୟେ ଶୂନ୍ୟେ ମା' ଡେଇଁଲାବେଳେ

ପବନରେ ଦୋଳି ଖେଳିଲା ପରି ତାକୁ ଲାଗୁଥିଲା । ଭାବୁଥିଲା ବାଃ, କି ମଜା, ବଡ଼ ହେଲେ ସେ ବି ସେମିତି ମାଆପରି ଡ଼େଇଁବ ।

ଭୁବନେଶ୍ୱର ଲିଙ୍ଗରାଜଙ୍କ ଦେଉଳ ପାଖ ସାଇ । ଘରସବୁ ପାଖକୁ ପାଖ ଲାଗିଛି । ମଝିରେ ଛୋଟ ଗଳିରାସ୍ତା । ଦୁଇ ତିନି ମହଲା କୋଠା ଉପରେ ଏଇ ପାତିଟି ତା' ମା' ସାଥିରେ ରହେ । ବୁଢ଼ା ବୁଢ଼ାମାନେ କହନ୍ତି—"ବସ୍ତି ଯୋଉଦିନୁ ହେଲାଣି, ଏ ମାଙ୍କଡ଼ ପଲ ସେଇଦିନୁ ଅଛନ୍ତି ।"

ଦିନେ ଭାରି ଝଡ଼ ପବନ ହେଲା, କୁଆପଥର ପଡ଼ିଲା । ମାଙ୍କଡ଼ମାନେ କିଲ୍‌ବିଲ୍ ହୋଇ ଯେ ଯୁଆଡ଼େ ପଳାଇଲେ । ବିଜୁଳି ତାରକୁ ତାର ବାଜି ନିଆଁ ବାହାରୁ ଥାଏ । ସେତିକି ବେଳେ ଏଇ ପାତିଟିର ମା ଛୁଆଟିକୁ ମେଘ ଦାଉରୁ ରକ୍ଷା କରିବ ବୋଲି ଜାଗାଟିଏ ଖୋଜୁଥାଏ । ହଠାତ୍ କୁଦା ମାରିଲା ଏ କୋଠାରୁ ସେ କୋଠାକୁ । ପିଲାଟି ବିଜୁଳି ତାରର ନିଆଁ ଦେଖି ଡରିଯାଇ ମା'କୁ ଛାଡ଼ିଦେଲା । ଆଖି ପିଛୁଳାକେ ସବୁ ଓଲଟ ପାଲଟ । ପିଲା ଆସି ପଡ଼ିଲା ନର୍ଦ୍ଦମାରେ—ମା' ପୁଣି ଗୋଟାଏ କୁଦା ମାରିଲା ବେଳେ, ତାର ଖୁଣ୍ଟିବାକି ସେଇଠି ଅଟକି ଗଲା । ହଲ୍ ନାହିଁ କି ଚଲ୍ ନାହିଁ । ମୁହଁଟି ତଳକୁ ଝୁଙ୍କି ପଡ଼ିଛି, ବିକଳରେ ଚାହୁଁଛି ତା' ପିଲାକୁ, ହଠାତ୍ ଗୋଟାଏ ଗର୍ଜନ ଶୁଣାଗଲା ଶେଷଥର ପାଇଁ ।

ମେଘ କମିଗଲା, ପବନ ଥମିଗଲା । ଆକାଶ ଯୋଉ ନିର୍ମଳକୁ ସେଇ ନିର୍ମଳ । ପିଲାଏ ଦାଣ୍ଡକୁ ବାହାରିଲେ । ଦେଖିଲେ—ମାଙ୍କଡ଼ ଛୁଆଟି ନର୍ଦ୍ଦମାରେ ପଡ଼ି ଚଁ ଚଁ ହେଉଚି । ମା'ଟି ତାର ଖର୍ଣ୍ଣରେ ବାଜି ଚାଲିଯାଇଚି । ସମସ୍ତଙ୍କ ପାଟିରୁ ଆହା···ଆହା···ଚୁ ଚୁ ।

ସାଇର ଜଣେ ବାବୁ ଛୁଆଟିକୁ ନେଇ ନିଜ ଘରେ ସାଇତାଲେ । ମଣିଷର ସାଇତାଣ ପାଇଁ ମାଙ୍କଡ଼ ଛୁଆଟି ମହାନନ୍ଦରେ ବଢ଼ିଲା । ସେ ହେଲା ତାଙ୍କ 'ଜନ୍' 'ଗ୍ରୁନ୍'ର ଜୀଅନ୍ତା ଜନ୍ତୁରି । ତାକୁ ନେଇ ପିଲାଏ ଖେଳନ୍ତି; ସେ ବି ପିଲାଙ୍କୁ ନେଇ ଖେଳେ ।

ସାଇଟାଯାକର ପିଲାଙ୍କର ସେ ଖେଳସାଥୀ । ଚଗଲା ପିଲାଙ୍କ ବିନା ମାଙ୍କଡଙ୍କର ଡର, ପିଲାଏ ବି ତାହାର ସାଥୀ । ସେ ଡରିବ କାହାକୁ ହଁ, କୁକୁରଗୁଡ଼ାକ ପଛିଲେ ପଛିଲେ ତାକୁ ଗୋଡଉଥିଲେ । ଏବେ ପିଲାଏ ଇମିତି କମିଆ କରି-ଦେଇଛନ୍ତି ଯେ କୁକୁର ପିଠିରେ ଏବେ ସେ ଘୋଡ଼ା ଚଢ଼େ । ତା' କାନ ମୋଡେ । ତା' ପିଠିରେ ବସି ଲାଙ୍ଗୁଡ଼ରେ ବେଲୁନ ବାନ୍ଧିଦେଇ ତାଳି ମାରେ । ପିଲାମାନଙ୍କର ମହାଆନନ୍ଦର ଖୋରାକ ଯୋଗାଏ ।

ସେ କାଳ କୁନି ପିଲାଙ୍କ ସାଥିରେ ମିଶି ହାତକୁ ହାତ ମିଳାଏ । ତାଙ୍କୁ ସାଲୁଟ କରେ । ବଡ଼ ବଡ଼ ଲୋକଙ୍କୁ ଦେଖିଲେ ଓଲଟା ହୁଏ । ଚଗଲା ଝିଅମାନେ କହନ୍ତି— "କଲେ ମାଙ୍କଡ଼, ପାଉଣୀ, କୋଉଦିନ ମିଷ୍ଟର ହୋଇ-ଗଲୁଣି ମ ?" ପାଟି ଦାନ୍ତମାଡ଼ି ଦେଖାଇ ହସେ । ତା'

ସାଥିରେ ଆଉମାନେ ବି ହସିଉଠନ୍ତି । କାହାର ଘର ତାକୁ ମନା ନାହିଁ । ସେ ସବୁରି ଘରକୁ ଯାଏ । ଯିଏ ଯାହାଦେଲା ଖାଏ, ଯେତେବେଳେ ଯାହା ଘର ପାଏ ଶୋଇପଡ଼େ ? ସେ ସବୁର ଘରର କୁଣିଆ ।

ଏବେ ସେ ପାଗଳଟି ଗୋଟିଏ ବିଚିତ୍ର ବେଶରେ ବାହାରିଲା । ନାକରେ ନୋଲକ, କାନରେ କାନଫୁଲ, ହାତରେ କାଚ, ମଥାରେ ସିନ୍ଦୂର, ଗୋଡ଼ରେ ନୂପୁର । ରୁମ୍ଝୁମ୍ ରୁମ୍ଝୁମ୍ ଶବ୍ଦ । କଣେଇ କଣେଇ ଚାହୁଁଚି, ଲାଜ, ଲାଜ ହୋଇ ହାତରେ ମୁହଁ ଘୋଡ଼ାଉଚି । ପିନ୍ଧିଛି ଖଣ୍ଡିଏ ଛିଟ ଫ୍ରକ୍ । ମୁଣ୍ଡରେ ରିବନ୍ ପାଟଶାଣୀଙ୍କ ନୂଆବୋହୂ ତାକୁ ଏମିତି ସଜେଇଚି ବୋଲି ଜଣାପଡ଼ିଲା । ତା' ସାଥିରେ ତା'ର ଭାରି ମେଳାପ । ସେ ନିଜ ମୁଣ୍ଡ କୁଣ୍ଡାଇଲାବେଳେ ତା'ମୁଣ୍ଡ କୁଣ୍ଡାଇଦିଏ, ସ୍ନୋ ମାଖିଦିଏ, ଶାଢ଼ୀଭଳି ଛିରୁ ପାଟକନା ତାକୁ ପିନ୍ଧାଇ ଦିଏ । ଅଇନା ସାମନାରେ ଠିଆ କରାଇ ଚିପିଚିପିକା ହସି ହସି ଗଡ଼ିଯାଏ । ପାଗଳ ବି ତା'ର ନଆ ରୂପରେ ଚହଲି ଉଠେ ।

ଏବେକର ଘଟଣା ।

ପାଟଶାଣୀଙ୍କ ଘରେ ଚହଲପଡ଼ିଯାଇଛି । କାନ୍ଦି କାନ୍ଦି ନୂଆବୋହୂର ଆଖି ଫୁଲିଗଲାଣି । ଘରେ ସମସ୍ତେ ଏଣେ-ତେଣେ ଖୋଜାଖୋଜି କରିବାରେ ଲାଗିଛନ୍ତି । ପାଟଶାଣୀଙ୍କ

ନୂଆ ନାତଟି କାହିଁ ? ଶେଯରେ ଶୁଆଇ ଦେଇ ମା' ତା'ର ଗାଧୋଉଥିଲା; ଆସିଲାବେଳକୁ ଛୁଆଟି ନାହିଁ । ଗଲା କୁଆଡ଼େ, କିଏ ନେଲା ? ଗାଁ ସାରା ପ୍ରଘଟ ହୋଇଗଲା, ଛୁଆଚୋରର ସାଇରେ ପଶି ପିଲାଟିକୁ ନେଇଯାଇଛି । ଥାନାରେ ଏତଲା ଦିଆଗଲା । ଗାଁଟାଯାକ ହାଲହୁଲି, କେବଳ ଛୁଆ ନୁହେଁ, ଶେଯ ସହିତ ଛୁଆକୁ ଟେକି ନେଇଛି ।

ଘଣ୍ଟାଏ, ଦି ଘଣ୍ଟା, ତିନି ଘଣ୍ଟା ବିତିଗଲା । ସାଇସାରା ଗହଳ ଚହଳ, ପାଟିତୁଣ୍ଡ, କାନ୍ଦବୋବାଳି । ଠିକ୍ ଏତିକି-ବେଳେ ପାଖ ଘରର ତିନିମହଲା କୋଠା ଉପରୁ ଗୋଟିଏ କଅଁଳ ଉତଆଣି ଛୁଆର କାନ୍ଦ ଶୁଣାଗଲା । କୁଆ ···ଆଁ··· କୁଆ ··ଆଁ ।

ନୂଆବୋହୂଟି ତା'ର ଛୁଆର ସ୍ୱର ବାରି ପାରି କାନ୍ଦ କାନ୍ଦ କହିଲା—"ଇଲୋ ଛୁଆ-ଚୋର ମୋର ମୋ ପିଲାକୁ ନେଇନି ସେଇ ଅଲକ୍ଷଣୀ ପାନ୍ତ ନେଇଯାଇଛି ।"

ଲୋକେ ଛାତ ଉପରକୁ ଚଢ଼ି ଦେଖିଲେ ସତକୁ ସତ ପାତ ଛୁଆଟିକୁ ଗୋଡ଼ରେ ଶୁଆଇ ଗୃମଟରେ କ୍ଷୀର ପିଆଉଛି । ତା' ନଖ ବାଜି ପିଲା କାନ୍ଦୁଚି ବିକଳ ହୋଇ । ଲୋକଙ୍କୁ ଦେଖିଲାକ୍ଷଣି ପାତ ହସିଦେଲା । ଛୁଆଟିକୁ କୋଳରେ ଜାବୁଡ଼ି ଧରିଲା । ଯେ ଯେତେ ମାଗିଲେ ଦେଲା ନାହିଁ, ସେମିତି ଜାବୁଡ଼ି ଧରିଥାଏ । ଶେଷକୁ ନୂଆବୋହୂ ଆସିଲାକ୍ଷଣି ଧିରକରି ଛୁଆଟିକୁ ତା'ହାତକୁ ବଢ଼ାଇ ଦେଲା । ତାକୁ ମୁଣ୍ଡିଆ ମାରିଲା । ସତେ ଅବା ନିଜ ଦୋଷପାଇଁ କ୍ଷମା

ମାଗିଲା । ଲୋକେ ରାଗରେ ତାକୁ ଢ଼'ଗୁର ଥାପଡ଼ ଦେଲେ । ସେ ମାଡ଼ ଡରରେ ନୂଆବୋହୂ ପଣତ କାନିତଳେ ଲୁଚି-ଗଲା । ସମସ୍ତେ ଘରକୁ ଫେରିଲେ ।

ସେଦିନ ସେ କିଛି ଖାଇଲାନି, ନାକ କାନରୁ ଅଲଙ୍କାରପତ୍ର ଉତାରିଦେଇ ନୂଆବୋହୂକୁ ଦେଇଦେଲା । ମୁହଁପୋତି ସିମିତି ବସିଥାଏ । ହଲ୍‌ନାହିଁ କି ଚଲ୍‌ନାହିଁ ।

"ହରି ତ ଟାଣ ! ମାଙ୍କଡ଼ ଜନମ ପାଇ ତ ଏତେ ଟାଣ, ମଣିଷ ହୋଇଥିଲେ ତ ବାକି ରଖନ୍ତାନି । ଯା' ଯା··· ଖା··· । ଖା···ଆ କହୁଚି । ନ ହେଲେ ପିଠିରୁ ଛାଲ ଛଡ଼େଇଦେବି । ଉଡ଼ଆଣି ଛୁଆକୁ ପେଟତଳେ ଜାକି ପଳେଇଲୁ, ଛୁଆ ମୋର ଖସି ପଡ଼ିଥିଲେ କ'ଣ କରିଥାନ୍ତି? ଭଲମଙ୍ଗଳ ଥିଲେ ଯା' ଖାଇ ଦେ, ବେଶୀ ମୁଖନି ଦେଖାଇଲେ ଠିକ୍ କରିଦେବି ।"

ପାତି ନୂଆବୋହୂର ସବୁ କଥା ଶୁଣିଲା । କିଛି ନ କହି ପୁଣି ଗୋଟିଏ ମୁଣ୍ଡିଆ ମାରିଲା । ଉଠିପଡ଼ି ଛୁଆଟିକୁ କୋଳକୁ ନେଇ ଦେଇ ଆଖିପିଛୁଳାକେ ମାଇଲା ଏକ କୁଦା ଛାତ ଉପରକୁ ।

ନୂଆବୋହୂ ହାତଠାରି ଡାକିଲା—"ଆ···ଆ··· ତେତେ ଆଉ କିଛି କହିବନି, ଆ— ।"

ପାତି ଶିଁ—ଶିଁ କରି କ'ଣ କହିଲା କେଜାଣି ? ହାତ ହଲାଇ ହଲାଇ ନାହିଁ ନାହିଁ କରି କୁଆଡ଼େ ପଳାଇଲା । ସେଇ ଦିନ୍‌ସେ, ସେ ଗାଆଁକୁ; ସେ ସାଇକୁ ଫେରିନି ।

# ଭିକାରୀ ରଜା ହେଲା

ଟାଇଁଟାଇଁଆ ଖରା, ସତେ ଯେମିତି ନିଆଁ ବୃଷ୍ଟି ହୋଇ ଯାଉଛି । ଚାଲି ଚାଲି ପାଦ ଫୋଟକା ହୋଇ ଗଲାଣି, ଆଖିରୁ ବାହାରୁଛି ଜୁଳୁଜୁଳିଆ ପୋକ । ଶୋଷରେ ତଣ୍ଟି ଫାଟି ପଡ଼ୁଛି । ଭିକାରୀଟି ଓଦା ଜିଭକୁ ମଝିରେ ମଝିରେ ଓଠ ଉପରେ ବୁଲାଇ ଆଣି ଚାହୁଁଛି, ପାଣି ଟୋପାଏ କୋଉଠୁ ମିଳନ୍ତାକି !

ବଙ୍କା, ଟେପଟା କଳାକୋତରା ସିଲଭର ଥାଳଟି ମୋଡ଼ି ମୋଡ଼ି ହୋଇ ଥାଳିଆଟିଏ ପରି ଦିଶୁଛି । ଭିକାରୀଟି ତା ମୁଣ୍ଡ ଉପରେ ତାକୁ ଥୋଇଲା, ଖରା ଦାଉରୁ ଟିକିଏ ରକ୍ଷା ପାଇବ ବୋଲି । ହାତରେ ବିପଦ ଆପଦର ସାଥି ବାଡ଼ିଟି । ସେ ରାସ୍ତାକଡ଼ ପଳାଶ ଗଛରୁ ପତ୍ର ତୋଳିଲା । ତୋଳି ପାଦ ତଳେ ଯତନରେ ଥୋଇଲା । ପିନ୍ଧା ଲୁଗାର ଚିରା ଧଡ଼ିଟିଏ ଛିଣ୍ଡାଇ ତାକୁ ପାଦରେ ବାନ୍ଧିଲା ।

ଆଃ···କି ଆନନ୍ଦ । ତାତିଲା ପାଦରେ କଅଁଳ ପଳାଶ ପତ୍ରର ଶୀତଳ ପରଶ । ଖଇଫୁଟା ବାଲି ଦାଉରୁ

ପାଦ ଯୋଡ଼ିକ କିଛି ସମୟ ପାଇଁ ରକ୍ଷା ପାଇଲା । ଆକାଶରେ ଦାଉ ଦାଉ ଜଳୁଥିବା ସୂର୍ଯ୍ୟଟା ଉପରେ ତା'ର ଭାରି ରାଗ । ଲାଲ ଲାଲ ଆଖି ଦୁଇଟା ଟେକି, ବାଡ଼ି ଉଠାଇ ଚାହିଁଲା ଆକାଶକୁ । ସୂର୍ଯ୍ୟଟା ପାଖରେ ଥାଆନ୍ତା କି; ପକାନ୍ତା ଏମିତି ଗୋଟାଏ ପାହାର ଯେ ଏକାଥରକେ ଖସ ପଡ଼ନ୍ତା ସମୁଦ୍ରରେ । ଗରିବ ବାଟୋଇଗୁଡ଼ାକ ତାହାର କବଳରୁ ରକ୍ଷାପାଇ ଯାଆନ୍ତେ ।

ଆଗରେ ଗୋଟିଏ ଝଙ୍କାଳିଆ ଆମ୍ବଗଛ । ଗଛର ଖିବ୍ ଅଗରେ ଲାଲ 'ହଳଦିଆ ଆମ୍ବ କେତୋଟି ଝୁଲୁଛି । ଭିକାରୀଟି ହାତ ଯୋଡ଼ି ନମସ୍କାର କଲା ଗଛକୁ । କହିଲା—'ବୃକ୍ଷରାଜ, ତମକୁ ଜହାର···ଏ ଜୀବନଟାକୁ ବଞ୍ଚାଇଦେଲ । ତମେ ନ ଥିଲେ ଏଇ ତତଲା ବାଲିରେ ଟଳି ପଡ଼ିଥାନ୍ତି । ଅଲୋଡ଼ା ଭିକାରୀର ଜୀବନ, ପଚାରୁଛି କିଏ ?

ଥକା ହୋଇ ଗଛ ତଳେ ବସିପଡ଼ିଲା । ଓଃ କି ଆନନ୍ଦ ! ଠିକ୍ ଏତିକବେଳେ ଗଛଉପରୁ ଖସିଲା ଗୋଟିଏ ଗୁଣ୍ଡୁଚି ଖିଆ ଦରପାଚିଲା ଆମ୍ବ । ଅଧା ମିଠା, ଅଧା ଖଟା । ସତେ ଅବା ଦେବପୁରୀରୁ ତାକୁ ଅମୃତ ମିଳିଗଲା । ସେ ଖଣ୍ଡିଆ ଆମ୍ବଟିକୁ ହାତରେ ପୋଛି ପୋଛି ପାଟିରେ ଲଗାଇଲା । ପନ୍ନକୁ ଟାଣି ହୋଇଯାଉଥିବା ଜିଭ

ଆଗେଇ ଆସିଲା ରସୁଆଳ ଆମ୍ବର ରସଟିକ ଚାଖିବ ବୋଲି । ଭେକ ଶୋଷ ଟିକଏ ଥମିଗଲା । ଗଛର ଡାଳ ଦିଖଣ୍ଡ ଭାଙ୍ଗି ବାଲିରେ ପକାଇ ଶୋଇଲା ମହା ଆନନ୍ଦରେ । ସୁଲୁସୁଲିଆ ପବନରେ ଆଖିପତା ମୁଦି ହୋଇ ଆସିଲା । ମୁଣ୍ଡତଳର ତକିଆ ହେଉଛି ସେଇ ଚେପଟା ସିଲଭର ଥାଳିଆଟା । ତା' ପାଖକୁ ଲାଗି ଥୁଆ ହୋଇଛି ଗୋଟିଏ ଛୋଟିଆ ପୁଟୁଳି । ତା'ର ଭିତରେ ଦିନ ତମାମ ଭିକ ମାଗି ମାଗି ପାଇଥିବା ଚାଉଳଗଣ୍ଡାକ ।

ଗଛରୁ ଓହ୍ଲାଇଲା ଗୁଣ୍ଡୁଚି ମୂଷା । ଗଛତଳକୁ ଆସି ଏଣେତେଣେ ଚାହିଁ ପୁଣି ଗଛ ଉପରକୁ ଉଠିଗଲା । ଚିଁ ଚାଁ ଭାଷାରେ ସେ କ'ଣ କହିଲା କେଜାଣି ଆଉ ଦି ଚାରିଟା ମୂଷା ବି ଓହ୍ଲାଇ ଆସିଲେ । ପୁଟୁଳିଟିକୁ ଆସ୍ତେ ଆସ୍ତେ ଟାଣି ନେଲେ ଗଛ ଉପରକୁ ।

ଚେଉଁ କରି ଭିକାରୀର ନିଦ ଭାଜିଗଲା । ସେ ବଲବଲେଇ ହୋଇ ପାଟିକଲା, "ମୋ ଚାଉଳ, ମୋ ଚାଉଳ ।" ଏତିକିବେଳେ ଗୁଣ୍ଡୁଚିଗୁଡ଼ାକ ଚିଁ ଚାଁ କରି ତା କଥାର ଉତ୍ତର ବୋଧହୁଏ ଦେଲେ । ଭିକାରୀଟି

ଉପରକୁ ଚେହିଁଲା ବେଲକୁ ମାଙ୍କଡ଼ଟାଏ କୋଉଠୁ ଆସି ବାଡ଼ିଖଣ୍ଡିକ ଧରି କୁଦାଏ ମାଇଲା ଗଛ ଉପରକୁ । ବିଚରା ଭିକାରୀ ବୁଢ଼ା ମୁଣ୍ଡରେ ହାତ ଦେଇ କାନ୍ଦ କାନ୍ଦ ହୋଇ ଚେହିଁଲା ଉପରକୁ । ମାଙ୍କଡ଼ ତା ଆଖିର ଲୁହ କ'ଣ ବୁଝିଲା କେଜାଣି ବାଡ଼ିଟିକୁ ଖୁବ୍ ଜୋରରେ ଛାଡ଼ିଲା ତଳକୁ । ଛଅ ସାତଟା ଆମ୍ବ ଏକାବେଳେ ତଳେ କୁଢ଼େଇ ହେଇଗଲା । ଆମ୍ବ ଗୋଟିଏ ଆସି ପ୍ରୁଟ୍ଟୁକି ବହରେ ବାଡ଼େଇ ହେବା ଫଳରେ ତାହା ବି ଖସି ପଡ଼ିଲା । ଭିକାରୀର ଆନନ୍ଦ ଦେଖେ କିଏ । ଦଣ୍ଡିକ ଭିତରେ ବି ଭଗବାନ ତା' ପାଇଁ ଏତେ ସୁଖ ଲୁଚେଇ ରଖିଛନ୍ତି ।

ବୁଢ଼ା ପାଇଲା ଆମ୍ବତକ ଗୋଟାଇ ସେଇ ଚେପଟା ଝିଲଭର ଥାଳରେ ରଖିଲା । ଓହୋ ଏତେ ଦିନକେ ତା ଥାଳ ଆଜି ପୂରିଛି । ବାରଦ୍ୱାର ବୁଲି ଗାଳି, ମାଡ଼, ଗାଞ୍ଜଣା ସହି ବେଳ ବୁଡ଼ିଲା ଭିତରେ ପାଏ ଦୁଇ ଚାଉଳ ମୁଠା ଚାଉଳ । ହାଣ୍ଡି ତଳିକି ଲାଗେନାହିଁ, ରାନ୍ଧିବ କ'ଣ ! ବୁଢ଼ାର ସଂସାର ବୋଲି କା ବୁଢ଼ୀଟା, ଆଉ ଗଛ ତଳେ ତାଳପତ୍ରର କୁଡ଼ିଆଟିଏ । ଦିନେ ଦିନେ ବୁଢ଼ା-ବୁଢ଼ୀ କଞ୍ଚା ଚାଉଳ ମୁଠାକ ପାଟିରେ ପକାଇଦେଇ ପାଣି ଗିନାଏ ଗିନାଏ ପିଇ ଶୋଇପଡ଼ନ୍ତି । ବୁଢ଼ା ଦିନେ

ଦିନେ ସିଏବେ ବୁଢ଼ୀଟା ନ ଥିଲେ ତାକୁ ଆଉ ଏତେ ବାଟ ଚାଲି ଚାଲି ବୁଢ଼ିଆକୁ ଫେରିବାକୁ ହୁଅନ୍ତା ନାହିଁ । ବୁଢ଼ୀ ଆଖିକୁ ଭଲ ଦିଶୁନି କି କାନକୁ ଭଲ ଶୁଭୁନି । ବଳ ବହପ ବି ଗଲାଣି । ତାହାର ଉପରେ ସିଏର୍ ଦେଇ ତ ପୁଣି ଏତେ ଦିନ ଚାଲି ଆସିଛି...ରହିଛି... ତାଙ୍କୁ ମରଣ ମୁହଁକୁ ଠେଲି ଦେବ ବା କେମିତି । ପାଦ ଖୋଲିଲା ଆଗକୁ । ବେଳ ବୁଡ଼ିଗଲାଣି...ଅନ୍ଧାର ମାଡ଼ି ଆସିଲାଣି ।

"ଏ ବାବୁ...କିଏ ଯାଉଚ ।

ଅନ୍ଧାର ଭିତରୁ ଶୁଣାଗଲା ମଣିଷର ସ୍ୱର । ବୁଢ଼ା ଅଟକିଯାଇ କହିଲା, "ମୁଁ ଘରକୁ ଯାଉଛି । ତମର କ'ଣ ହେଲାକି ?

"ଘରକୁ ଯାଉଚ ! ହଉ ବାପ ଯାଅ । ମୁଁ ସେ ଗାଁକୁ ଯାଇଥାନ୍ତି ଯେ ଆଉ ଯାଇ ପାରିବନି ଏଇ ଗଛମୂଳେ ରାତିଟା କଟେଇ ଦେବି । ଆଜି ଇମିତି ଗୋଟାଏ ଦିନ ଯେ ପେଟରେ ତୋରାଣି ମୁନ୍ଦେ ପଡ଼ିନି । ଭିକ ମାଗି ମାଗି ଯୋଉ ଚାଉଳତକ ପାଇଥିଲି ବାଟରେ ଝୁଣ୍ଟେଇ ହୋଇ ପୁଟୁଳାଟି ହଜେଇ ଦେଲି । ଅନ୍ଧାରରେ ଅଣ୍ଡାଳି ଅଣ୍ଡାଳି ଥକିଲି । ବାପା, କ'ଣ ପାଖରେ ଅଛି ? ପଇସାଏ ଅଧଲାଏ ମିଳିବ ?" ବୁଢ଼ୀ ଏକ ନିଶ୍ୱାସରେ କହିଚାଲିଲା ।

ଏଁ ମାଉସୀ, ଏଇଟା ତମ ପୁଟୁଳା । ଦେଖିଲ, ହଜିଲା ବଳଦ ଖୋଜିଲା ଠିଁ । ମୁଁ ପରା ତମ ପଛେ ପଛେ ଆଉଥେଲି । ଏଇଟି ତମ ଚାଉଳ ପୁଟୁଳାଟି ପାଇଚ ନିଅ । ଭାବୁଥିଲି ଆହାଃ କାହାର ପୁଟୁଳା, ପଡ଼ିଗଲା, ତାକୁ କିମିତି ଦେଖନ୍ତିକି ଦେଇ ଦିଅନ୍ତି । ମୋ ମନ ଭାରି ଖୁସି ମାଉସୀ, ନିଅ ତମ ଚାଉଳ ପୁଟୁଳାଟି ନିଅ । ପିଲାଙ୍କ ପାଇଁ ଆମ୍ବ, ଦି'ଟା ନେଉଥିଲି ଯେ ତମେ ଦୁଇଟା ଖାଅ ।" ଏହା କହି ଭିକାରୀଟି ତା ନିଜ ଚାଉଳ ପୁଡ଼ିଆଟି ଆଉ ଆମ୍ବ ଦିଟା ସେଇ ବୁଢ଼ୀ ଭିକାରୁଣୀ ହାତରେ ଦେଇ ଘରକୁ ଫେରିଲା ।

ଘରେ ବୁଢ଼ୀ ରାତ କଟପାତ ପରି ଘୁମୁରୁଚି । "ବୁଢ଼ା ଆସିଲାନି ବୁଢ଼ା ଆସିଲାନି, ଏତେ ରାତି ହେଲାଣି ।" କିଟିମିଟିଆ ଅନ୍ଧାର । ମୁହଁକୁ ମୁହଁ ଦିଶୁନି, ବୁଢ଼ୀ ପଡ଼ର କୁଡ଼ିଆ ମୁହଁରେ ବସିଚି । କାନ ଡେରିଚି । ପବନରେ ଖସ୍ ଖସ୍ ଶବ୍ଦ ହେଲେ ଭାବୁଚି ବୁଢ଼ା ଆସିଗଲାକି । ବେଳେ-ବେଳେ ଆକାଶର ତରା ଗୁଡ଼ାକୁ ଚାହିଁ ଚାହିଁକି ମନେ ମନେ ପଚାରୁଚି—"ତମେ ତ ସବୁ ଉପରେ ବସିଚ, ଟିକିଏ ଅନିସା କରି ବୁଢ଼ାଟା ଆଉଚି କି ନାହିଁ । କିଛି ଉତ୍ତର, ପାଉନାହିଁ, ପୁଣି ତଳକୁ ମୁହଁ ତପାତି ଦେଉଚି । ଚଲାବାଟକୁ ଲକ୍ଷ୍ୟରେ ଚିହ୍ନାଇ ପଚାରେ, "ଆମ ବୁଢ଼ା ଆଉଚି କି ? କ'ଣ

ଗୁଙ୍ଗୁଡ଼ି କେତେଣି, ଏପଟ ସେପଟ ଅନାଉଚି । ହଠାତ୍
ଅନ୍ଧାର ଭିତରେ ପାଦ ଶବ୍ଦ ଶୁଣାଗଲା । ବୁଢ଼ୀ ଘର ଆଡ଼କୁ
ନଜରେଖି କରି ଚାହିଁଲା ।

"ଆଇଲଣି ଆଇଲଣି । ବାଟରେ ଟିକିଏ ଝଡ଼
ପବନ ହେଲା ଯେ ରହିଗଲି । ମୁଁ ତ ଭାବୁଥିଲି । ବୁଢ଼ୀଟା
ଅନିଷା କରିଥିବ । ନେ ଅଣ୍ଟି ଦେଖା ।

ବୁଢ଼ୀ ଆନନ୍ଦରେ କୁରୁଳି ଉଠିଲା । କହିଲା,
ଖରାଦିନିଆ ମେଘପବନ, ବିଶ୍ୱାସ ନାହିଁ । ଝଡ଼ ପବନ
ହେଲେ ଗଛ ମୂଳକୁ ଯିବନି, କେତେବେଳେ କୋଉ କଥା ।
କିଛି ନ ହେଲେ କଣ୍ଟାବୁଦା ମୂଳରେ ବସିଯିବ ପଛକେ
ଗଛମୂଳ ମାଡ଼ିବନି ।" ଏହା କହି ଅଣ୍ଟି ଦେଖାଇଲା ବୁଢ଼ା
ଆମ୍ବୃତକ ଅଜାଡ଼ି ଦେଇ କହିଲା, ଆଜି ଏତିକି ମିଳିଚି ।
ଚାଉଳ ମିଳିଲାନି ।

ବୁଢ଼ୀ ହସି ହସି କହିଲା, "ନ ମିଳୁ, ଠାକୁରେତ
ଭୋକିଲା ରଖି ନାହାନ୍ତି । ଏ ଆମ୍ବୃତକରେ ରାତିଟା ଚଳିଯିବ ।

ଏତିକିବେଳେ ଶୁଣାଗଲା ଖସ୍ ଖସ୍ ଶବ୍ଦ । ମଣିଷର
ପାଦ ଶବ୍ଦ । ମଣିଷର ନିଶ୍ୱାସ, ମଣିଷ ଦେହର ଗନ୍ଧ ।

"କିଏ ? କିଏ ଆସୁଚ ?"

ଅତି କରୁଣ ସ୍ୱରଟିଏ ଶୁଭିଲା । "ମୁଁ ଗୋଟିଏ
ଅନାଥ ପିଲା । ରାତିଟା କଟେଇବାକୁ ଗାଁରେ କେହି ଜାଗା

ଚିହ୍ନିଏ ଦେଲେନ । ସମସ୍ତେ ଚେଇଁ ଚେଇଁ ମାର ମାର କଲେ । ଧିବଲି ମରବ ପଛେ ଏ ଗାଁରେ ରହିବନି । ବାଟ ତ ଦିଶୁନି, ଅଣ୍ଡାଳି ଅଣ୍ଡାଳି ଆସୁଚି ।"

ବୁଢ଼ୀ ମିଠାଳିଆ ଗଳାରେ କହିଲା—"ବାବୁରେ ଆମେ ବି ତୋପରି ଦୁଃଖିଲୁ । ତୁ ଆଜି ରାତିଟା ଏଇ କୁଡ଼ିଆରେ କଟାଇଦେ, ସକାଳ ହେଲେ ଯିବୁ । ଆମେ ବୁଢ଼ାବୁଢ଼ୀ ଏକଲା ଅଛୁ । ପିଲାପାଣ୍ଡ କେହି ନାହାନ୍ତି ।"

"ଯାହାହେଉ ମୋତେ ବି ଏତେ ଦିନକେ ବାପ ମା'ର କୋଳ ମିଳିଗଲା । ମୁଁ କ'ଣ ତମର ପିଲା ନୁହେଁ ?"

ହଁରେ ବାପା, ତୋତେ ଦେଖିଲାବେଳୁ ମୋର ସେ ପିଲାଗୁଡ଼ାକର ମୁହଁ ଆଖି ଆଗରେ ନାଚୁଛି । ଆ···କିଛି ତ ଖାଇବାକୁ ନାହିଁ, ଏଇ ଆମ୍ବ ଦୁଇଟା ଖାଇଦେ । ବୁଢ଼ୀ ଆଖିର ଲୁହ ପୋଛୁ ପୋଛୁ କହିଲା ।"

ବାଃ ମୁଁ କଣ ପେଟୁ ଯେ ଏକା ଏକା ଖାଇବି, କାହିଁକି ତମେ ?

ବୁଢ଼ା ହସ ହସି କହିଲା—"ଏଇପରି ଆମେ ଖାଇକରି ଉଠିଚୁ, ସେଇଥିପାଇଁ ସବୁ ସରିଯାଇଚି । ତୁ ଆମ୍ବତକ ଖା ।

ପିଲାଟି ଆମ୍ବତକ ଖାଇଲା । ବୁଢ଼ୀ ଅଖା ପକାଇଦେଲା ଶୋଇବାକୁ । ମହାଆନନ୍ଦରେ ଶୋଇଲା । ସୁଲୁସୁଲିଆ ପବନ ବଳେ । ଆକାଶରେ ଜହ୍ନ ବି ତରସିଲାଣି । ଅନ୍ଧାର ଦୂରେଇ ଗଲାଣି । ବୁଢ଼ାବୁଢ଼ୀ ପିଲାଟିର ମୁହଁଟିକୁ ଅନେଇ

ନିଜର ପିଲାପିଲାଙ୍କ କଥା ମନେ ପକାଉଥାନ୍ତି । ରାତି ଅନେକ ହେଲା । ଖାଇବାକୁ କିଛି ନାହିଁ । ଦୁହେଁ ଦୁହିଁଙ୍କ ମୁହଁକୁ ଚାହିଁଲେ । ବୁଢ଼ୀ କହିଲା—"ମୁଁ ପାଣି ପେଟେ ପିଇଦେଇ ରାତିଟା ଚଳେଇ ଦେବି ।" ବୁଢ଼ା ଫେଁକିନା ହସିଦେଇ କହିଲା—"ତୁ ଚଳେଇଦେଲେ ମୁଁ କ'ଣ ପାରିବିନି ।"

ସମସ୍ତେ ଶୋଇଲେ । ନିଦ ଯେତିକି ସପନ ସେତିକି । 'ଛାଇ ଛାଇକା ନିଦ...ଛାଇ ଛାଇକା ସପନ । ବୁଢ଼ାବୁଢ଼ୀ ଦିହିଁଙ୍କ ଦିହେଁ ଦେଖୁଛନ୍ତି । ଭୋକିଲା ପେଟରେ ପୁଣି ଏତେ ନିଦ ଏତେ ସପନ । ବୁଢ଼ା ଦେଖୁଚି ସେଇ ଦିହରୁ ଆଲୁଅ ବାହାରୁଛି । ସେ ଗୋଟିଏ ଦେବତା ଭଳି ଜଣାଯାଉଚି । ସେ କହୁଚି, ତୁମେ ପୂର୍ବ ଜନମରେ ଜଣେ ରଜା ଥିଲ । ତମର ସବୁ ଭଲ ଗୁଣ ଥିଲା ; କିନ୍ତୁ ମତେ ତମ ରାଇଜରେ ଢେଙ୍ଗୁରା ଦେଇ ପ୍ରଜାମାନଙ୍କୁ ତାଗିଦା କରି କହିଥିଲ—ଭିକାରୀକୁ କେହି ଭିକ ଦେବନି । ଏହା ଫଳରେ ରାଜ୍ୟରେ ଭିକାରୀ ରହିବେନି । ଭିକ ଦେଇ ଦେଇ ପ୍ରଜାମାନେ ଗରିବ ହୋଇଯିବେ ନାହିଁ । ମନେରଖ, ଭିକ ଦେଇ କେହି ଗରିବ ହୁଏନି । ତୁମେ କ'ଣ କେବେ ଶୁଣିଚ ଭିକାରୀକୁ ଭିକ ଦେଇ କେହି ଗରିବ ହୋଇଚି । ଏ ଜନ୍ମରେ ସେ ପାପ କଟିଲା । ନିଜେ ଭିକାରୀ ହେଲେ ବି ରଜାର ମନ ତମ ପାଖରେ ଅଛି । ଭୋକରେ ରହି ଅନ୍ୟକୁ ସାହାଯ୍ୟ କରିଚ । ଏଇ ତମ ରାଜ୍ୟ ଫେରାଇ ନିଅ । ମହାଆନନ୍ଦରେ ରାଜ୍ୟ ପାଳନ କର ମୁଁ ଯାଉଚି । ଏହା କହି ସେ କୁଆଡ଼େ ଉଭେଇଗଲା ।

ଗ୍ରହଁଙ୍କର ନଦ ଗ୍ରଜିଗଲା ବୁଢ଼ାର । ଦେଖିଲା ସେ ପିଲାଟି ନାହିଁ । କୁଢ଼ିଆ ବଦଳରେ ରାଜପୁରୀ ହୀରା, ନାଲା ମୋତି, ମାଣିକ୍ୟରେ ହସୁଛି । ବର୍ତ୍ତମାନ ଅତୀତକୁ ସପନ ପରି ଭୁଲିଯାଇ ସାଜିଛନ୍ତି ରାଣୀ । ବେଶ ପୋଷାକରେ ସେ ବ ସୁନ୍ଦର ଦିଶୁଛନ୍ତି ।

ସତେ କ'ଣ ତା'ର ଭାଗ୍ୟ ବଦଳି ଯାଇଛି—ଗ୍ରହର ଆଡ଼ ଯେ ଉଜ୍ଜ୍ୱଳ ଉଠୁଛି ।



ଛୋଟିଆ ପିଲାଟିଏ । ଖେଳରେ ତା'ର ଭାରି ସଉକ । ତା'ର ତିନୋଟି ଭାଇ—ଲକ୍ଷ୍ମଣ, ଭରତ, ଶତ୍ରୁଘ୍ନ । ସବୁଥିରେ କେହି କାହାକୁ ଊଣା ନୁହଁନ୍ତି । ରୂପ, ଗୁଣ, ଚାହାଣି, କାମଦାମରେ ଏକୁ ଆରକ ବଳି ।

ବଡ଼ ଭାଇ ରାମ । ଦଶରଥଙ୍କର ବଡ ପୁଅ । ଅଯୋଧ୍ୟାର ଯୁବରାଜ । ବଡ଼ ହେଲେ ସେ ହେବେ ରାଜାଙ୍କ ପରେ ରାଜା ।

ଦିନକର ଘଟଣା । ସବୁ ଭାଇ ଏକାଠି ଖେଳୁଥାନ୍ତି । ଭରତ କହିଲେ—"ଭାଇ, ମା'ଙ୍କୁ କହ, ସେ ଆମ ପାଇଁ ଗୋଟିଏ ହରିଣଛୁଆ ଅଣାଇଦେବେ । ଆମେ ତା' ସାଥିରେ ଖେଳିବା । ତା ପଛରେ ଦଉଡ଼ିବା, କୁଦା ମାରିବା । ମାଙ୍କଡ଼-ଛୁଆ, ହରିଣ ଛୁଆ, ଛେଳିଛୁଆ, କଅଁଳା ବାଛୁରୀ, ଶଙ୍ଖି ବିଲେଇ ଛୁଆ—ଏମାନଙ୍କ ସାଥିରେ ଖେଳିବାକୁ ଭାରି ମଜା ଲାଗେ, ନୁହେଁ ?"

"ହଁ, ହଁ, ସତରେ ଭାରି ମଜା ଲାଗେ । ମୁଁ ବି ସେଇ କଥା ଦିନେ ଦିନେ ଭାବେ । ହରିଣଛୁଆଟିଏ କୋଳରେ ଜାକି ଧରି ତା କାନ ପାଖରେ କୁତୁ କୁତୁ କଲେ, ବାଃ କେଡ଼େ ମଜା ହୁଅନ୍ତା ନୁହେଁ ?" ଠିକ୍ ହେଲା, ମା'ଙ୍କୁ ପାଇ କହିବେ । ତାଙ୍କ ପାଇଁ ହରିଣଛୁଆ ବଣ ମୂଲକରୁ ଅଣାଯିବ ।

"ମା'........ମା' !"

ବାଳକ ରାମଚନ୍ଦ୍ରଙ୍କୁ କୋଳକୁ ଟାଣି ନେଇ କୌଶଲ୍ୟା କହିଲେ—"ବାପା, କ'ଣ ତୁମର ଦରକାର ?"



ରାମ ମା'ଙ୍କ କାନ ପାଖରେ ଦୁଇ ହାତରେ ମୁହଁ ଲୁଚାଇ ଚୁପ୍ ଚୁପ୍ କରି କହିଲେ—"ମା ମୋର ଗୋଟିଏ ଖେଳନା ଦରକାର ।"

ଆନନ୍ଦରେ ହସିଉଠିଲେ କୌଶଲ୍ୟା ।

"ଖେଳନା ? ତୁମପାଇଁ କେଉଁ ଖେଳନାର ଅଭାବ? ଅଯୋଧ୍ୟାର ରାଜପୁତ୍ରମାନଙ୍କ ପାଇଁ କେଉଁ ଖେଳନା ବାକି ରହିଗଲା ଯେ ଏତେ ମନ ଦୁଃଖ ?"

"ମା', ଆମକୁ ଜୁନ ହରଣ ଛୁଆଟିଏ ଦିଅ।"
କୌଶଲ୍ୟା ହସି ଦେଇ କହିଲେ—"ଏଇ କଥା! ଗୋଟିଏ



ଜୁନ ହରଣଛୁଆ କିଣ୍ଟମ୍ୟୁ ମିଳାଇ ଦେବ। ଗୋଟାଏ କାହିଁକି ଅଯୋଧ୍ୟାର ବଣ ଜଙ୍ଗଲରେ ହରଣ ପଲ କ'ଣ ଅଭାବ ଅଛନ୍ତି! ଯେତେ କହିବ, ସେତେ ଆଣିବା, ହେଲେ... ।"

"କ'ଣ ମା,' ଆଉ କ'ଣ ଅସୁବିଧା ଅଛି କି ?"

"ଅସୁବିଧା କିଛି ନାହିଁ ଯେ ପ୍ରଜାମାନେ ଯେପରି ମହାଆନନ୍ଦରେ ଅଛନ୍ତି, ବଣ ଜଙ୍ଗଲରେ ପଶୁପକ୍ଷୀ ମଧ୍ୟ ସେପରି ନିର୍ଭୟରେ ମହାଖୁସିରେ ଚଳୁଛନ୍ତି। ମା' କୋଳରୁ

ଛୁଆଛଡ଼ାଇ ଆଣିଲେ ସେ କେତେ କାନ୍ଦିବ । ଛୁଆଟି ମା' କୋଳରେ ଥିବାବେଳେ ଯେପରି କଅଁଳ, ଗୁଲୁଗୁଲିଆ, କଉତୁକିଆ ହୋଇଥାଏ, ମାଆକୁ ଛାଡ଼ିଆସିଲେ ତା' ମନ ମଉଳିଯାଏ । ଫୁଟିଲା ଫୁଲକୁ ଛିଣ୍ଡାଇଦେଲେ ଠିକ୍ ଯେମିତି ହୁଏ, ସେମିତି ।"

"ଆମେ ତାକୁ ସବୁଠୁ ବଢ଼ିଆ ଜିନିଷ ଖାଇବାକୁ ଦେବୁ, ମା' ଠାରୁ ବଳି ସ୍ନେହ କରିବୁ ତାକୁ ବାନ୍ଧିବୁ ନାହିଁ, ସେ ମନ ଖୁସିରେ ଉଆସସାରା ନାଚି କୁଦି ଖେଳିବ । ବଣରେ କ'ଣ ପାଉଚି ?

କୌଶଲ୍ୟା ପୁଅକୁ ଗେଲ କରି ଚୋକଟିଏ ଦେଇ କହିଲେ—"ସେ ତା ମାଆଠୁ ଏଇଆ ପାଉଚି । ଆମେ କ'ଣ ଦେଇପାରିବା ? ଛୁଆକୁ ମା' କୋଳ ସୁଖ କ'ଣ ଏ ଦୁନିଆଁରେ କେହି ଦେଇପାରେ ?"

ବାଳକ ରାମଚନ୍ଦ୍ର ମା'ଙ୍କ ମୁହଁକୁ ଚାହିଁ କହିଲେ—ସତରେ ମା ମୁଁ ତୁମ କୋଳରେ ଥିବାବେଳେ ସବୁଠୁ ବେଶି ଆନନ୍ଦ ପାଏ । ତାହେଲେ ବଣରୁ ମା' ଛୁଆ ଦିହିଙ୍କୁ ଉଆସକୁ ନେଇ ଆସିବା । ଆମ ବଗିଚାରେ ସେମାନେ ଖୁସିରେ ରହିବେ ।"

ତାହା ହିଁ ହେଲା, ଉଆସର ଲୋକମାନେ ବଣକୁ ଗଲେ । ଏଣେ ତେଣେ ବୁଲିଲେ । ହରିଣ ପଲ ଆଖିରେ

ପଡ଼ିଲେ ନାହିଁ । ଖରାଦିନ, ଘର ଶୋଷ ହେଲାଣି, ସେମାନେ ପାଖ ଝରଣା କୂଳକୁ ଯାଇ ପେଟେ ପେଟେ ପାଣି



ପିଇଲେ । ଭାବିଲେ, ନିଶ୍ଚୟ ହରିଣମାନେ ପାଣି ପିଇବାକୁ ଆସିବେ । ସେମାନେ ଜାଲ ବିଛାଇ ଦେଇ ଗଛ ଉପରେ ବସିଲେ । ସଞ୍ଜକୁ ସଞ୍ଜ କିଛି ସମୟ ପରେ ଦଳେ ହରିଣ ଝରଣା ଆଡ଼କୁ ମୁହାଁଇଲେ । ହଠାତ୍ ସେମାନଙ୍କର ଭିତରେ ଛନକା ପଶିଗଲା । କାନ ଠିଆ ଠିଆ ହୋଇଗଲା । ଥପ୍ କରି ଛିଡ଼ା ହୋଇ ମୁହଁ ଉପରକୁ ଟେକି ପବନରୁ ଗନ୍ଧ ବାରିଲେ । ମଣିଷ ଗନ୍ଧ କୁଆଡ଼ୁ ଆସୁଛି ?

ହୁରୁଡ଼ି ଗଲେ ହରିଣମାନେ । ବନ୍ଦ୍ଲି ଯେଉଁଟେ ଘନ ଜଙ୍ଗଲ ଭିତରେ ଲୁଚିଗଲେ । ଅହା, ବିଚରା ଛୁଆଟି କଅଁଳ ଗୋଡ଼ ଥକେଇ ଗଲା, ଲୋକମାନେ ତା ପିଛାଧରି ତାକୁ ଧରି ପକାଇଲେ ।

ହରିଣ ଛୁଆ କାନ୍ଦି କାନ୍ଦି ଡାକ ପକାଇଲା—"ମା... ମା'...ମରିଗଲି ଲୋ ମା' ! ମରିଗଲି ।"

ବଣ ଭିତରୁ ହଠାତ୍ କାନ୍ଦଣା ସ୍ୱର ଶୁଣାଗଲା । ମା' ତା ଛୁଆକୁ ନପାଇ କାନ୍ଦୁଛି । କାନ୍ଦି କାନ୍ଦି ପଛକୁ ଫେରିଲା । ଛୁଆର ପାଟିବାର ଡ଼ାକକୁ କାନେଇ ଆସି ପହଞ୍ଚିଲା ଝରଣା କୂଳରେ । ଖଣ୍ଡେ ବାଟରେ ଛିଡ଼ାହୋଇ ଚାହିଁଲା ତା ପିଲାକୁ ଜଣେ କେହି କାନ୍ଧରେ ପକାଇଛି । ମା'କୁ ଦେଖି ଛୁଆ ଅଥୟ ହୋଇ ଉଠିଲା, ସତେ ଯେମିତ କୁଦା-ମାରି ମା' ପାଖରେ ହାଜର ହୋଇ ଯିବ ! ଲୋକଟି ତାକୁ ଆଉରି କୋଉରେ ଭିଡ଼ି ଧରିଲା । ହରିଣୀକୁ ଦେଖି ଅନ୍ୟ-ମାନେ ଧରିବାକୁ ଚେଷ୍ଟା କଲେ, କିନ୍ତୁ ପାରିଲେ ନାହିଁ । ଛୁଆଟିକୁ ନେଇ ଉଆସରେ ପହଞ୍ଚିଲେ । ରାମ, ଲକ୍ଷ୍ମଣ ଭରତ, ଶତ୍ରୁଘ୍ନ ଆନନ୍ଦରେ କୁରୁଳି ଉଠିଲେ । ବାଃ, କି ଛନଛନିଆ, ଗୁଲୁଗୁଲିଆ ହରିଣଛୁଆଟି ! ଭାରି ମଜା ହେବ ।

ବାଳକ ରାମଚନ୍ଦ୍ର ତାକୁ କୋଳେଇ ନେଇ ଆଉଁସିବା ବେଳେ ଛୁଆଟି କାନ୍ଦି ଉଠିଲା । ଧାର ଧାର ଲୁହ ତା ଆଖିରୁ

ଗଡ଼ି ଆସି ମୁହଟିକୁ ଓଦା କରିଦେଲା । ରାମଙ୍କର ହାତ ଲୁହରେ ଓଦା ହୋଇଗଲା । ସେ ତା ମୁହ ଟେକି ପଚାରିଲେ —"କାନ୍ଦୁଛୁ ? ମାକୁ ଛାଡ଼ି ଆସିଛୁ ବୋଲି କାନ୍ଦୁଛୁ ?'



ଠିକ୍ ଏତିକି ବେଳେ ଉଆସ ବାହାରେ ମା ହରିଣୀର ବିକଳ କାନ୍ଦଣା ଶୁଣାଗଲା । ଲୋକମାନେ ଯାହାକୁ ଧରି ପାରି ନ ଥିଲେ ସେ ଆପେ ଆସି ଧରା ଦେଇଛି । କୌଶଲ୍ୟାଙ୍କ ଆଖି ଜକେଇ ଆସିଲା । ଛୁଆ ପାଇ ହରିଣୀର କାନ୍ଦ, ମାଙ୍କ ଶୁଖିଲା ମୁହଁ ଆଉ ଛୁଆଟି ବିକଳ ଚାହାଣି ଦେଖି ମୁହଁ ଶୁଖାଇ ଦେଲେ । ରାମ ପଚାରିଲେ "ମା" ହରିଣଛୁଆର ମା'କୁ ଆଣିବା ?

କୌଶଲ୍ୟା ଟିକିଏ ହସି ଦେଇ କହିଲେ—"ବାପା ! ତୁମେ ଯୁବରାଜ ରାମଚନ୍ଦ୍ର, ତୁମେ ତ ଦିନେ ଏ ରାଜ୍ୟକୁ ଚଳାଇବ । ଏବେ ତୁମେ ବିଚାର କର, ଛୁଆକୁ ହରାଇଥିବା ମା'କୁ ଆମେ ବନ୍ଦୀ କରି ଉଆସରେ ରଖିବା ନା ନାହିଁ । ବଣଜଙ୍ଗଲ ଯା'ର ଘର, ସେଇଟା ତାର ଉଆସ । ତାକୁ ଛାଡ଼ି ସେ ରହିପାରିବ ତ ?"

ବାଳକ ରାମଚନ୍ଦ୍ରଙ୍କ ମୁହଁ ଗମ୍ଭୀର ହୋଇଗଲା । ସେ ଟିକିଏ ଭାବି କହିଲେ—"ମା,' ମୋ ଭୁଲ ପାଇଁ ମୋତେ କ୍ଷମା ଦିଅ । ଆଜି ଅଯୋଧ୍ୟାର ପ୍ରଜାମାନେ ଯେପରି ଖୁସିରେ ଅଛନ୍ତି, ବଣ ଜଙ୍ଗଲର ପଶୁ ପକ୍ଷୀ ମଧ୍ୟ ସେପରି ଆନନ୍ଦରେ ରହିବେ । କେହି ସେମାନଙ୍କୁ ମାରି ପାରିବେ ନାହିଁ ।"

ରାମଚନ୍ଦ୍ର ଦଉଡ଼ି ଯାଇ ହରିଣଛୁଆଟିକୁ ବାହାରେ ଛାଡ଼ିଦେଲେ । ଛୁଆଟି କୁଦା ମାରି ମା' କୋଳରେ ମିଶିଗଲା । ହରିଣୀ ଆନନ୍ଦରେ ବୋବାଳି ଛାଡ଼ି କହିଲା "ରାମଚନ୍ଦ୍ରଙ୍କର ଜୟ ହେଉ ।"

ବନ ହରିଣୀ ବନରେ ମିଶିଗଲା ।



